# ଗଳ୍ପ : ଆଜି ଓ କାଲିର

ଅଧ୍ୟାପକ : ବଂଶୀଧର ଷଡ଼ଙ୍ଗୀ

ପ୍ରକାଶକ :

ବିଦ୍ୟା ମନ୍ଦିର

କଟକ—୨

# ଗଳ୍ପ : ଆଜି ଓ କାଲିର

ଅଧ୍ୟାପକ : ବଂଶୀଧର ଷଡ଼ଙ୍ଗୀ

ପରିବେଷକ :
ଫ୍ରେଣ୍ଡ୍ସ୍ ପବ୍ଲିଶର୍ସ
ବିନୋଦବିହାରୀ, କଟକ-୭୫୩୦୦୨

ପ୍ରଥମ ମୁଦ୍ରଣ : ୧୯୭୬
ଦ୍ୱିତୀୟ ମୁଦ୍ରଣ : ୧୯୭୮
ତୃତୀୟ ମୁଦ୍ରଣ : ୧୯୭୯

ପ୍ରଚ୍ଛଦପଟ :
ଅସିତ ମୁଖାର୍ଜୀ

ମୁଦ୍ରାକର :
ଶ୍ରୀ ନୀଳମାଧବ ପ୍ରେସ
ବିଡ଼ାନାସୀ, କଟକ-୮

ମୂଲ୍ୟ : ପାଞ୍ଚ ଟଙ୍କା ମାତ୍ର

**GALPA : AJI O KALIRA**

Compilor :
**Prof. Bansidhar Sarangi**

Distributor :
**Friends' Publishers**
Binodbehari Cuttack—2

1st. Edition : 1976
2nd. Edition : 1978
3rd. Edition : 1979

Cover Design :
**Asit Mukherjee**

*Printers* :
**Sri Nilamadhab Press,**
Bidanasi, Cuttack-8

**Price : Ruppes Five only**

# ସୂଚୀ





# ବୀରେଇ ବିଶାଳ

● ଫକୀର ମୋହନ ସେନାପତି

ମୁକୁନ୍ଦପୁରର ମନୁ ବିଶାଳ ଆଉ ତା ସ୍ତ୍ରୀ ବୁଢ଼ୀ ସନ୍ନିପାତ ବେମାରରେ ଆଗପଛ ମାସକ ଭିତରେ ଚାଲିଯିବା ବେଳେ ଗୋଟିଏ ମାତ୍ର ପୁଅ ବୀରେଇର ବୟସ ହୋଇଥିଲା ପାଞ୍ଚ ବର୍ଷ । ଲଙ୍ଗଳା ପିଲାଟା କିଛି ବୁଝେ ନାହିଁ । ବାପ ମାଙ୍କୁ କୋକେଇରେ ଘେନିଯିବା ବେଳେ ଦାଣ୍ଡରେ ଭୂଇଁରେ ଗଡ଼ି 'ବାପା ଲୋ' 'ମା ଲୋ' ବୋଲି ଡାକ ପାରୁଥାଏ । ଘରେ କେହି ନାହିଁ, କିଏ ବା ପିଲାଟାକୁ ସମ୍ଭାଳି ନେଉଛି ? ବାରମାସିଆ ମୂଲିଆ ତିନି ଜଣ ଥିଲେ ସତ, ହେଲେ ସେମାନେ କଣ ଜାଣନ୍ତି, କଣ କରିବେ ? ତେବେ କଣ ବୀରେଇ ଅନାଥ ହୋଇଯିବ ? ନାହିଁ ନାହିଁ, ତିନି ପୁରୁଷର ଭିନେ ହେଲା ସିନା, ଲେଖାରେ ବୀରେଇର ଖୁଡ଼ି ତା ଦେଢ଼ ତା ଆଉ ମଉସା ପିଉସାମାନେ ଶୁଣି ଧାଇଁ ଆସିଲେ । ସେମାନଙ୍କର ଦୟାର ଶରୀର, ବୀରେଇର ବିକଳ କାନ୍ଦଣା ଶୁଣି ଧାଇଁ ଆସିଲେ । ସମସ୍ତେ ଏକାବେଳକେ ପିଲାକୁ କାଢ଼ଝୁଡ଼ି ଦେଇ କାଖେଇ ନେବାଲାଗି ଟଣାଟଣି କଲେ । ଟଣାଓଟରାରେ ପିଲାକୁ ବାଧିଲାଣି, ଆହୁରି ଅଧିକ ବିକଳ ହୋଇ ଡାକ ପକାଉଥାଏ । ସେ କଥା ଶୁଣୁଛି ବା କିଏ ? ଦାଦି ପିଉସା ମଧ୍ୟରେ ବୋଲାବୋଲି ହୋଇଗଲା । ସମସ୍ତେ କହୁଛନ୍ତି, "ମୁଁ ଥାଉଁ ଥାଉଁ ପିଲାକୁ ପାଳିବାର ଆଉ କାହାର ଅଧିକାର ?" ଗୋଳମାଳ ଶୁଣି ଗାଁ ଲୋକେ ବି ରୁଣ୍ଡ ହୋଇଗଲେଣି । ଛୁଆଟା ସମସ୍ତଙ୍କ ମୁହଁକୁ ଚାହୁଁଛି—ସମସ୍ତେ ତ ଅଛନ୍ତି, ମା ବାପା କାହାନ୍ତି ? ଏତିକିବେଳେ ପହଞ୍ଚିଗଲେ ପୀତେଇ ପାଧୋ, ମାମୁଁ ଧଇଁ ସଇଁ ହୋଇ ଧାଇଁଛନ୍ତି ; ଦୂରରୁ ଡାକିଦେଲେ "ଗୁଡ଼ ଗୁଡ଼, ଅଲଗା ହୋଇଯାଅ, ଛେଉଣ୍ଡକୁ ପାଳେ କିଏ ? ପାଳେ ତ ବାପର ମା, ନୋହିଲେ ପାଳେ ତ ମା'ର ମା । ତାର ମା'ର ମା ଆଉ ନାହିଁ ସତ, ମାଉଁ ତ ଅଛି । ଯେଉଁ ପିଲାର କେହି ନାହିଁ, ତାକୁ ପାଳେ ମାଉଁ । ତା ମାଉଁ ଦିନଦିନ ହେଲା ଅନ୍ନ ଜଳ ଛୁଇଁ ନାହିଁ । ପିଲାଟି ଲାଗି ଡାକ ପକାଉଛି । ଦୃଷ୍ଟା ଅପା ଘଟକବାବେଳେ ବାର ବାର କହିଯାଇଛି ବୀରେଇକୁ ତା ମାଉଁ ପାଳିବ । ଗୋଟାଏ କାମରେ ଆଉ ଗୋଟାଏ ଗାଁକୁ ବାହାରି ଯାଇଥିଲି, ଏଣେ ଏତେ କଥା ହୋଇଗଲାଣି, ମୋତେ ଜଣା ନାହିଁ । ନୋହିଲେ ସମସ୍ତଙ୍କୁ ମୁକାବିଲା କରାଇ ଦେଇଥାନ୍ତି ।" ପଞ୍ଚ ଆଠ ବସିଲେ, ସମସ୍ତେ ରଫା କରିଦେଲେ । ପିଲାକୁ ପାଳିବାର

ମାମୁଁର ଅଧିକାର । ଲୋକଙ୍କ ମୁହଁରୁ କଥା ବାହାରୁଛି କି ନାହିଁ, ମାମୁ ତ ଚାଲି ପରି ଝାମ୍ପି ମାରି ପିଲାକୁ କାଖେଇ ଘରକୁ ଧାଇଁଲେ । ସାରେଇ ମାମୁଁକୁ କେବେ ଦେଖି ନାହିଁ । ନୂଆ ମଣିଷଟା, କାହିଁକି ଯେବନିବ ବୋଲି 'ମା ଲୋ, ମା ଲୋ' କରି ଆତୁର ଡକା ପାରୁଥାଏ । ମାମୁଁ ସାରେଇକୁ ଘେନି ଯାଇ ମାଈଁ ଗୁରୁବାସି ଜମା କରିଦେଲେ, ଗୁନ ଗୁନ ହେଉଁଚୁଡ଼ାଏ କି କଥା କହିଲେ । ମାଈଁ ମୁରୁକି ମୁରୁକି ହସି ହସି କହିଲେ, "ଆରେ ସାରେଇ ଆ, ଚଣ୍ଡୀ ସଙ୍ଗରେ ଖେଳିବୁ ।' ଖଣ୍ଡିଏ ପୋଡ଼ପିଠା, ଚମୁଟାଏ ଭଲ ଚଟା ଗୁଡ଼ ହାତକୁ ବଢ଼ାଇ ଦେଲେ । ସାରେଇ ହେଉ ଦେଉଁ ଖାଇ ନ ଥିଲା, ବଡ଼ ଭୋକିଲା ଥିଲା, କେତେକ ଖାଇ ଦେଇ ଗୁଡ଼ାଏ ପାଣିପିଇ ଦେଲା ।

ମାମୁଁ ପୀତେଇ ପାଢ଼ଙ୍କ ଘର ମାକଳପୁର । ମୁକୁନ୍ଦପୁରଠାରୁ ଅଧକୋଶେ ଖଣ୍ଡେ ଛଡ଼ା । ହେଉଣ୍ଡ ପିଲାଟି ଜାଣି ମାମୁଁ ଘରେ ପରମ ସୁଖରେ ରହିଲା । ତା ମାଲମତା ହେପାଜତ କରୁଛି କିଏ ? ପୀତେଇ ପାଢ଼େ ଘରକରଣା ଲୋକ । ତାଙ୍କ ନିଜ ବିଷୟ ତାଙ୍କୁ ଅସମ୍ଭାଳ । ଅଧକୋଶେ ଦୂରକୁ ଆସି ପିଲାର ମାଲମତା ଘରକରଣା ଦେଖିଚିବାକୁ ବେଳ ନାହିଁ । ପାଢ଼େ ନିହାତି ବ୍ୟାକୁଳ ହୋଇ ଗାଁ ଲୋକଙ୍କ ପାଖରେ ସବୁବେଳେ କହି ବୁଲନ୍ତି, "ଏହି ଦିନ କେତେଟା ଭିତରେ ପିଲାଟିର ମାଲ ଗାଁ । ଲୋକେ ଲୁଟିକି ଘେନି ଗଲେଣି । ସବୁ ମାଲଗୁଡ଼ିକ ଆପଣା ଘରକୁ ଘେନି ଯାଇ ନଜରରେ ନ ରଖିଲେ ସବୁ ବରବାଦ ହୋଇଯିବ ।" ସମ୍ପତ୍ତି ମଧ୍ୟରେ କେତେ ପୌଟି ଧାନ, ହଡ଼ା ହଣ୍ଡି ଦ' ପୁଞ୍ଜା ! ଏସବୁ ନଜରରେ ରଖିବାର କଥା । ବୋଇଲା, 'ଜୋରୁ, ଗୋରୁ, ଧାନ—ଏ ତିନି ନଜର ଗୁଜରାଣ ।'

ପାଢ଼ଙ୍କୁ ଦିନବେଳେ ତର କାହିଁ ? ଅଧ ରାତିରେ ଗାଁ ଲୋକେ ଶୋଇଲା ବାଦେ ପାଢ଼ଙ୍କୁ ବେଳ ମିଳେ । ନିଜର ଯୋଡ଼ି ବଳଦରେ ଲଦି ପିଲାର ମାଲଗୁଡ଼ିକ ଆପଣା ଘରକୁ ଘେନି ଆସନ୍ତି । ଗାଁ । ଉଗବାଳ କହି ବୁଲେ, "ପାଢ଼େ ଦଶଗୋଟା ବଳଦରେ ଦୋଡ଼ିଏ ଦିନ ପର୍ଯ୍ୟନ୍ତ ଧାନ ଚାଉଳ, ଲୁଗାପଟା, କଂସାବାସନ, ଚଳପତ୍ର ସବୁ ବୋହିଥିଲେ । ଗାଁ । ଲୋକେ ସେ କଥାକୁ ସତ ମଣିଲେ । ବଣାଲର ଘରପର ଘରଟାଏ ଥିଲା । ତାହାର ସୃଷ୍ଟା ମଝେଇରେ ସ୍ଥଳି ଭରଣ ଧାନ ମହଜୁଦ ଥିଲା, ଏ କଥାଟା ସମସ୍ତଙ୍କୁ ଜଣା । ଏ ବାଦ ମଝ ବଣାଲ ଖାତକମାନଙ୍କୁ ଦୋଡ଼ିଏ ପଚିଶ ଭରଣ ସରିକି ଧାନ କରଜ ଦେଇଥିଲେ । ପାଢ଼େ ମୂଳ କାଗଜର ଅସୁଲ କରିନେଲେ, ବଣାଏ ଧାନ କାହାରିକୁ ଛାଡ଼ି ଦେଇ ନାହାନ୍ତି । ସେ କହନ୍ତି,

"ଛେଉଣ୍ଡ ମାଲ, କେମିତି ଗୁଣ୍ଡିବେ ? ନଜର ହେଲେ ଦଶ ଗୌଣୀ ଗୁଡ଼ ଉଠନ୍ତେ ।"

ଆଉ ପାଏ ଗାଁ ଲୋକଙ୍କ ଆଗରେ ସବୁବେଳେ କହି ବୁଲନ୍ତି, ବଣାଲଟା ବଡ଼ ସାହାଖର୍ଚ୍ଚ ଲୋକ ଥିଲା । ସବୁ ଖାଇ ପିଇ ଉଡ଼ାଇ ଦେଇ ଯାଇଛି, ଛେଉଣ୍ଡଟି-ଲାଗି କିଛି ରଖିଯାଇ ନାହିଁ । ଘରକରଣା ଭିତରେ ଯାହା ଥିଲା ପଲଣ ପାଣ୍ଡି ଦ' ଖଣ୍ଡ, ମୁଁ ତାକୁ ସାଙ୍ଗରେ ଉଠାଇ ରଖିଛି । ପିଲାଟା ପାଇଲେ ତା ଜମା' କରିଦେବ । ମୁଁ କଣ ସେ ପଲଣରେ ବାହୁଡ଼ିବ ? ରାମ ରାମ ।" ମାଈ ପାଖ ମାଇକିନିଆଙ୍କ ଆଗରେ କହି ବୁଲନ୍ତି, "ମୋ ଷାରେଇ ଆଗ ତ, ଚଣ୍ଡୀ ପଛ । ତା ବାପର କିଛି ନ ଥିଲା ନାହିଁ, ମୋର କଣ ଉଣା ଅଛି ? ବସି ବସି କୋଡ଼ିଏ ବରଷ ଖାଉ ।"

ଦିନ ଘଣ୍ଟି ସୂଅ ପରି ଗଡ଼ିଯାଉଛି । ଦେଖୁଁ ଦେଖୁଁ ବାର ବର୍ଷ ବିତିଗଲାଣି । ଆସନ୍ତା ଭାଦ୍ର ଛ ଦିନରେ ଷାରେଇର ଜନ୍ମଦିନ, ଆଠ ବର୍ଷ ପୂରି ଯାଇ ନ ବର୍ଷ ପଶିବ । ଷାରେଇ ଆଉ ମାମୁଁପୁଅ ଚଣ୍ଡିଆ ଅବଧାନଙ୍କ ଚାଟଶାଳୀରେ ପଢ଼ୁଛନ୍ତି । ଷାରେଇଟି ଧୀର, ପଢ଼ାରେ ବି ଖୁବ୍ ମନ । ଖଡ଼ିପାଠ, ପିଶାଣ, ଫେଡ଼ାଣ, ହରିବୁଣ, ଛଡ଼ାଇ ରାସ ପୋଥି ଧରିଛି । ଚଣ୍ଡିଆରେ କେତେବର୍ଷ ପୂରିଗଲାଣି, ହେଲେ କଣ, ଆଜଯାଏ ଖଡ଼ିପାଠ ଓଡ଼ାଙ୍କ ବି ଛୁଇଁନି ନାହିଁ । ମାଙ୍କର ଗୋଟିଏ ବୋଲି ଆଖି, ବଡ଼ ଗେଲ କରନ୍ତି । ମା ମୁହଁ ପାଇ ବଡ଼ ହସ୍ତୀଢିଆ ହୋଇଗଲାଣି, ଘରୁ ବାହାରିଲା ତ ପାଞ୍ଚ ଘରୁ ଦଶ ବୋଲଣା ଆଣିବ—ଗୁଲିଲ ଖଟଡ଼ରେ ହାତ ଦିଏ । ତା ନାମରେ କେହି କିଛି ଆସି ଗୁହାରି କଲେ, ମା ପୁଅକୁ ବାଣ୍ଡିବା ଥାଉ, ଓଲଟା ଗାଁ ଲୋକଙ୍କ ସାଙ୍ଗରେ କଳି କରିବେ । ମା'ଙ୍କର ବିଶ୍ୱାସ, ଚଣ୍ଡିଆଟି ଦେଖିବାକୁ ବଡ଼ ସୁନ୍ଦର ବୋଲି ଗାଁ ମାଇକିନିଆଏ ହିଂସାରେ ସହିପାରନ୍ତି ନାହିଁ । ଚଣ୍ଡୀ ଚାଟଶାଳୀରେ ବି ବଡ଼ ଗୋଳମାଳ କରେ । ଆପେ ତ ପଢ଼େ ନାହିଁ, ପିଲାମାନଙ୍କ ସଙ୍ଗରେ ଭୁଗୁଟାରେ କଳି ଲଗାଏ, ମାର ଧର କରେ । ଦିନେ ଅବଧାନେ ସହି ନ ପାରି ବେତରେ ଖୁବ୍ ପ୍ରସ୍ତେ ବାଡ଼େଇ ଗଲେ, ପିଠିରେ ଲମ୍ବ ଲମ୍ବ ନୋଳା ବସିଗଲା । ମା ତା ଦେଖି ଖୁବ୍ ଡକାପାରି କାନ୍ଦିଲେ । ଅବଧାନଙ୍କ ଚୌଦପୁରୁଷଙ୍କ ସକାଶେ ନିତାନ୍ତ କୁତ୍ସିତ ଦ୍ରବ୍ୟ ଖାଦ୍ୟବ୍ୟବସ୍ଥା, ଆଉ ନରକ ନାମକ ସ୍ଥାନକୁ ଯିବା ସକାଶେ ଆଦେଶ କଲେ । କହିଲେ, "ମୋର କଣ ନାହିଁ ଯେ ପୁଅ ପାଠ ଟାଏ ପଢ଼ିବ ? ଆରେ, ମୋର ଯେ ବିଷୟ ଅଛି, ଛଅ ପୁରୁଷ ବସି ଖାଇବ ।" ଚଣ୍ଡୀର ପଢ଼ା ବନ୍ଦ । ସେ ତ ତାହା ହିଁ ଖୋଜୁଥିଲା । ଚଣ୍ଡୀ ଗାଁର

ବାହାର, ଧୋବା ଟୋକାମାନଙ୍କ ସଙ୍ଗରେ ଦିନ ସାରା ବୁଲେ । ବାପେ କିଛି କାମ ପାଇଟିରେ ଲଗାଇଲେ, ମା ବାଘୁଣୀ ପରି ଗର୍ଜନ କରି କହନ୍ତି, "ମୋର ଦୁଧଖିଆ ଛୁଆଟା କାମପାଇଟି କରିବ କଣ ମ ? ନଅଟା ନା ଦଶଟା, ଗୋଟାଏ ବୋଲି ଆଖି, ସେ କଣ ଭଲ କାମ କରିପାରିବ ? ବୁଲୁଥାଉ ।" ବୀରେଇର ବି ପଢ଼ା ବନ୍ଦ । ମାଈଁ ଖପାଂପାଏ ହୋଇ କହିଲେ; ଏ ଅବଧାନଟା କିଛି ନୁହେଁ । କଣ ବା ପଢ଼ାଏ, ମାସ କୁ ପୁରୁଣା ଦୁଇଅଣା ପଇସା ଗଣେ । ଫେର କଣ ନା ଅଙ୍କ ପଣକିଆ ଲେଖିବ, ପୂଜା ଲେଢ଼ା -ସେଥିରେ ସ୍କୁଲ ଶୁଆଟିଏ । ଦିନ ପନ୍ଦରଟା ଯାଇ ନାହିଁ ତ, ଓଡ଼ାଙ୍କ ଲେଖିବ, ଫେର ପୂଜା ! ନା ନା, ତା ହେବ ନାହିଁ ।"ଦୁଇ ଥର ଦିନ ବାଦେ ମାଈଁ ମାମୁଙ୍କୁ ଡାକି କହିଲେ, ଦେଖ ତ, ଭେଣ୍ଡିଆଟା ଦିନକୁ ଛଅ ବେଳ ଠକିବ, ଗୁରୁଟାରେ ଗାଁରେ ବୁଲିବ କିଁଆ ? ଗାଈରଖା ଟୋକାଟାକୁ ବାହାର କରିଦିଅ, ଖାଇଆ ଗାଈ ଜଗୁ । ମାମୁଁ ଟିକିଏ ମୋଡ଼ ମୋଡ଼ ହେଉଥିଲେ, ଡରରେ ପାଟି ଫିଟାଇ ପାରିଲେ ନାହିଁ । ବୀରେଇକୁ ଡାକି କର୍ପ ଲେଇ କହିଲେ, 'ଅରେ ବାପ ବୀରେଇ ? ଏହି ଯେ ଗୋରୁପଲ ଦେଖୁଛୁ, ଏମୁଣ୍ଡିକ ସବୁ ଚୋର । ପର ଲୋକ ଭଲ ଚରାନ୍ତି ନାହାନ୍ତି, ଗାଈ ବଳଦଗୁଡ଼ାକ ହଡ଼ା ହୋଇଗଲେଣି । ପର ଲୋକର କଣ ମାୟା ଥାଏ ? ଶୁଣ, ଅଣ୍ଡେ ଅଣ୍ଡେ ଗଛ ମୂଳରେ ବସି ଗୋରୁ ଦି'ଟା ଦେଖିବୁ । କିଛି ମେହନତ ନାହିଁ, ଖାଲି ଅଡ଼ାଇ ଘେନିଯିବୁ ସଞ୍ଜବେଳେ ଆଣି ଗୁହାଳରେ ପୂରାଇଦେବୁ ।" ବୀରେଇ ପାଞ୍ଚଣ ଖଣ୍ଡେ ଧରି ଗୋରୁ ଚରାଇ ବାହାରିଲା । ଗାଁ ଲୋକେ କିଛି କହିଲେ, ମାମୁଁ ଜବାବ ଦିଅନ୍ତି 'ଅଚ୍ଛା, ଛେଉଣ୍ଡିର ଲକ୍ଷ୍ମୀ ଦଖଣ୍ଡ ପର ହାତରେ ପଡ଼ି ବୁଡ଼ିବାକୁ ବସିଲା । ତା ନିଜ ମାଲ ନିଜେ ଦେଖୁ ।" ସତକୁ ସତ ଗୋରୁପଲଟା ଏକା ବୀରେଇର । ତାହା ବାପା ମରିବାବେଳେ ମାଈ -ଅଣ୍ଡିରା- ଛଡ଼ା—ଦାମୁଡ଼ି ଦୁଇ ଜୋଡ଼ି ଭଲ ଗୋରୁ ମାମୁଁ ଗାଁ ମଝି ଗୋହିରିରେ ଅଡ଼ାଇ ଆଣୁଥିବା ଗାଁ ଲୋକ ସମସ୍ତେ ଦେଖିଛନ୍ତି ।

ଆହୁରି ବି ଆଠ ନ ବର୍ଷ ଗଲାଣି, ବୀରେଇର ଉଣୁଣିକା ଅଠର ବର୍ଷ ବୟସ । ପିଲାଟା ନା ଆଉ କଣ ? ହେଲେ କାମ ପାଇଟିକି ବଡ଼ ପାରିଲା । ମାମୁଁର ଦାନ୍ତି ଫଖା ଖତ, ଯୋଡ଼ାଏ ବାରମାସିଆଙ୍କୁ ଧରି ସବୁ ସମ୍ଭାଳୁଛି । ଏବେ ମାମୁଁ ଖତକାର୍ଯ୍ୟଟା ଇଚ୍ଛା ଉପରେ ଉପରେ ଦେଖନ୍ତି । ବୀରେଇ ଦେଖିବାକୁ ଯେମିତି ଢେଲା, କଥାବାର୍ତ୍ତାକ ବି ଖୁବ୍ ମଧୁର । ଦେହରେ ବାଘ ପରି ବଳ । ଦିନେ ପାଣ୍ଡେଇ ପାଞ୍ଚ ସାନ ଟି ଅ କମଳୀକୁ ଗୋଟାଏ ମାରଣା ବଳଦ ବାନ୍ଧିବାକୁ ଗୋଡ଼ାଉଥିଲା—ବୀରେଇ ବଳଦର ଲାଞ୍ଜ ଧରି ଭିଡ଼ି ରଖିଲା । ଗାଁର କି ପୁରୁଷ କି ସ୍ତ୍ରୀ ସମସ୍ତେ

ସୀରେଇକୁ ଭଲ ପାଆନ୍ତି, ଖୁବ୍ ପ୍ରଶଂସା କରନ୍ତି । ହେଲେ ସେ ପ୍ରଶଂସାଟା ମାଇଁ ଶୁଣିଲେ ଖପା ହୋଇଯାନ୍ତି, ଲୋକଙ୍କ ସାଙ୍ଗରେ କଳି କରନ୍ତି । ଚଣ୍ଡୀର ପ୍ରଶଂସା କଲେ ମାଇଁ ମନ ବଡ଼ ଖୁସି ।

ଚଣ୍ଡୀ ସଞ୍ଜ ସକାଳ ଘରେ ପଶେ ନାହିଁ, ପାଞ୍ଚ ସାତଟା ଗୁଣ୍ଡା ଟୋକା ସାଙ୍ଗରେ ଦିନ ରାତି ବୁଲୁଥାଏ । ସେମାନଙ୍କର କାମ ଟହଲଚଢ଼ା, ବାଗୁଡ଼ିଖେଳ, ଚୌପଟ ଖେଳ, ଗଞ୍ଜେଇ ଭିଡ଼ା । ହାଲକୁ ଗୋଟାଏ ମଦଭାଟି ଖଟି ଜାରି କଲାଣି ଅଳି କରି କାନ୍ଦି ଡରାଇ ଧମକାଇ ମା ପାଖରୁ ଟଙ୍କା ପଇସା ନିଏ, ଆପଣା ଗୋଠରୁ କୋଡ଼ିଏ ପଚିଶ ଟଙ୍କାର ଦାମୁଡ଼ିଗୁଡ଼ାକ ଗୁଆଳକୁ ଦୁଇ ତିନି ଟଙ୍କାରେ ବିକିଦିଏ । ବୃକଣଆମାନଙ୍କ ସହରେ ଆପଣା ଘର ମରେଇରୁ ଧାନ ଚୋରେଇକରି ବିକିଦିଏ । ମା ଜାଣିପାରି ବି ପୁଅ ଦୋଷ ଲୁଚାଏ । ମା ଡରରେ ବାପା କିଛି କହିପାରେ ନାହିଁ । ମା ଆଗେ ଲୁଚାଚୋରା କରି ଚଣ୍ଡୀକୁ କିଛି କିଛି ଟଙ୍କା ପଇସା ଦେଉଥିଲେ । ଏବେ ହାତ ଖାଲି । ଚଣ୍ଡୀ ଟଙ୍କା ପଇସା ନ ପାଇ ମା'କୁ କେତେ ଥର ମାଡ଼ ଦେଲାଣି । ହେଲେ ମା ମାଡ଼ ଖାଇ ଚୁପ ହୋଇ ରହେ, ବାପା ଆଗରେ କିଛି କହେ ନାହିଁ ।

ଗାଁ ଲୋକ ପାଞ୍ଚ ଜଣ ସୀରେଇକୁ କହିଲେ, "ଆରେ ସୀରେଇ ! ତୁ କଣ ମାମୁଁ ଘରେ ସବୁଦିନେ ପେଟ ଭାତରେ ରହିଥିବୁ, ଆପଣାର ସଂସାର କରିବୁ ନାହିଁ ? କଥାଗୁଡ଼ାକ ସୀରେଇ ମନକୁ ଭଲ ପାଇଲା । ସେ ଏବେ ସବୁ କଥା ବୁଝିଲାଣି । ମାମୁଁ ମାଇଁ କାହାର ପିଆର । ଖିଆପିଆ ସବୁ କଥାରେ ପୁଅ ଉପରେ ମାମୁଁ ମାଇଁଙ୍କର ଯେ ଶ୍ରଦ୍ଧା, ତା ଉପରେ ତାର କଣିକାଏ ବି ନାହିଁ । ଦେଢ଼ ହଜାର ଟଙ୍କା ଖରଚ କରି ପୁଅକୁ ବାହା କଲେ, ତାହା ବିଷୟର ନାମ ଚର୍ଚ୍ଚା ନାହିଁ । ଦିନ ରାତି ହାଡ଼ ଭାଙ୍ଗି ଏତେ ଯାହା ଆଣୁଛି, ଚଣ୍ଡୀ ଗଞ୍ଜେଇ ମଦରେ ଖାଇ ସବୁ ଉଡ଼େଇ ଦେଉଛି । ମାମୁଁ ମାଇଁ କିଛି ବୋଲିବାକୁ ନାହାନ୍ତି । ନଷ୍ଟ ସେ ଘରକରଣା ଉଜାଡ଼ିଦେବ ।

ଦିନେ ସଞ୍ଜବେଳେ ମାମୁଁ ମାଇଁ ପିଣ୍ଡାରେ ବସିଥିଲେ, ସୀରେଇ କାମଧନ୍ଦା ସାରି ଯାଇ ପାଖରେ ବସିଲା । ମାମୁଁ ମାଇଁ ଦିନସାରାର କାମ ପାଇଁ ଟିକିଏ କଥା ପଚାରିଲେ । କାମ ମାଇକି ଏଥା ଶୁଣି ମାମୁଁ ମାଇ ତାଙ୍କର ସୀରେଇର ଆଉ କିଛି କଥା ଶୁଣା ହୁଏ ନାହିଁ । ସୀରେଇ ଜବାବ ଦେଇ ପାଖରେ ବସିଥାଏ । ମାମୁଁ ପଚାରିଲେ, "କିରେ ସୀରେଇ ! ଆଉ କିଛି କଥା ଅଛି ? ସୀରେଇ ଦଣ୍ଡେ ଗୁମ୍ ମାରି ବସି ଦୁଇଟା ହାଇ ମାରି କହିଲା, ମାମୁଁ ମୁଁ ଏବେ ଅପଣା ଘରକୁ ଯିବି ।"

ମାମୁଁ ମାଈଁ ତ ଶୁଣି ଚମକ ପଡ଼ିଲେ, ତାଙ୍କ ମୁଣ୍ଡରେ ଯେମନ୍ତ ବଜ୍ରଟାଏ ଭାଙ୍ଗି ପଡ଼ିଲା । ମାମୁଁ ମାଈଁ ଦୁଇ ଜଣଙ୍କର ଦୁଇ ବର୍ଷ ହେଲା ଶ୍ୱାସ ବେମାରୀ । ସଞ୍ଜବେଳେ ସୁଖ ଅଣାର ଟେଳାଏ ଟେଳାଏ ଆପୁ ଗିଳି ପକାଇଲେ ଟିକିଏ ଚଳବୁଲ ହୋଇପାରନ୍ତି । ମାମୁଁ ତ ପିଣ୍ଡାରୁ ଓହ୍ଲେଇବାକୁ ନାହିଁ, ଚଣ୍ଡିଆର ତ ଏହି ଦଶା, ସାରେଇ ବାହାରିଗଲେ ଆଉ କଣ ଘରକରଣା ରହିବ ? ମାମୁଁ ଦୁଇ ଘଣ୍ଟା ନିଶ୍ୱାସ ପକେଇ କହୁଁ କହୁଁ କହିଲେ, "ହଇରେ ବାପ ଘରକୁ ଯିବୁ ନାହିଁ କ'ଣ ? ରହ, ମୁଁ କନ୍ୟାଟିଏ ଖୋଜା ଖୋଜି କରୁଚ୍ଛି ବାହାଘର କରାଇଦେବି, ଦ, ପ୍ରସ୍ତ ଘର ବନାଇ ଦେବି । ତୁ ଉଚ୍ଚୁଙ୍ଖଳା ପିମ୍ପଟା, ଅଲଗା ଏକୁଟିଆ ହୋଇ କଣ ରହିପାରିବୁ ? ଏ ଗାଁ ଲୋକଙ୍କ କଥା ବୁଝୁ ନାହୁଁ ? ମୁଁ ବୁଝି ବୁଝି ବୁଢ଼ା । ସବୁ ତୋ ପାଖରୁ ଛଡ଼ାଇ ନେବେ, ଭିକୁଆ ହୋଇ ବସିଥିବୁ । କଣ କହୁଚ୍ଛୁରେ ବାପ ? ହେଲା ହେଉ, ଆଉ ଗୋଟାଏ ବର୍ଷ ରହିଯା । କଣ କହୁଚ୍ଛୁ ରେ ବାପ ?" ସାରେଇ କହିଲା, "ନାଁ, ମୁଁ ଘରକୁ ଯିବି । ମାଈଁ ଟିକିଏ ରାଗୀ, ଚଣ୍ଡୀ ହଜାର ଦୋଷ କରୁ କିଛୁ କହିବେ ନାହିଁ, ଆଉ କେହି ତାଙ୍କ କଥା ଟିକିଏ ଅମାନ୍ୟ କଲେ ପଡ଼ିଏ ଯାଏ ଗର୍ଜୁଥିବେ । ଟିକିଏ ରଗିଯାଇ କହିଲେ, "କରେ ସାରେଇ ! ମାମୁଁ ସେ ମୁରବି, ତାଙ୍କ କଥା ଅମାନ୍ୟ କରୁଚ୍ଛୁ ? ଗାଁ ଲୋକଙ୍କ ବୁଦ୍ଧିରେ ପଡ଼ିଲୁଣି କି ରେ ? ଆରେ କହିବାକୁ ଡେର, ବହିବାକୁ କିଏ ରେ ? ଯୋଗନଖିଆ ଘରଭଙ୍ଗା ଲୋକଙ୍କ ବୁଦ୍ଧିରେ ପଡ଼ ନା । ପାଞ୍ଚ ବର୍ଷର ଛେଉଣ୍ଡ ଲଙ୍ଗଳା ହୋଇ ଦାଣ୍ଡରେ ପଡ଼ିଥିଲୁ, ଏଇ ମାମୁଁ ଥିଲେ ବୋଲି ଅଣ୍ଟାଟିରୁ ଭେଣ୍ଡିଆ ହୋଇ ଆଜ କଥା କହୁଚ୍ଛୁ । ଏହି ଯୋଗନଖିଆଏ ସମସ୍ତେ ତ ଥିଲେ, ତୋ ତୁଣ୍ଡରେ ପେଜ ମନ୍ଦାଏ କେହି ଦେଲେ ନାହିଁ ? ନଣନ୍ଦ ମରିବାବେଳେ ମୋ ହାତ ଧରି ବାରବାର କହି ଯାଇଛନ୍ତି, ଖବରଦାର ! ମୋ ସାରେଇକୁ କାହିଁ ଗୁଡ଼ିଦେବ ନାହିଁ, ବସିବର ଘରେ ରଖିବ । ଅଲପାଇଖିଆ ଗାଁ ଲୋକେ ତାକୁ ଫୁସୁଲେଇଲେ ଶୁଣିବାକୁ ଦେବ ନାହିଁ । ତୁ ମା କଥା, ବାପ ବଦଳରେ ମାମୁଁ କଥା ଯଦି ନ ଶୁଣିବୁ, ଆପେ ପୋଡ଼ି ଉଡ଼ିଯିବୁ, କାହାର କଣ ଯିବ ?" ମାମୁଁ କହିଲେ "ଥାଉ ଥାଉ, ସେ ସବୁ କଥା ପଛେ ହେବ, କଥା କଣ ପଳାଉଚ୍ଛି ? ଦିଅ ଦିଅ ବୋହୂକୁ ଡାକଦିଅ, ଚୁଆଟା କାମ ପାଇଟି କରି ଥକିଛି, ଆଗେ ତାକୁ ଖାଇଦିଅ, ଚଣ୍ଡିଆ ନ ଅଘିଲା ନାହିଁ !" ସାରେଇ ମନ ମଧ୍ୟରେ ବଡ଼ ହସିଲା, 'ଓହୋ ! ଅଜ ଯେ ମାମୁଁଙ୍କର ବଡ଼ ଦୟା !, ସେକ ତ ଚଣ୍ଡୀ ନ ଆସିଲେ ଖିଆପିଆ ହୁଏ ନାହିଁ ! ଚଣ୍ଡୀ ଗାଁ ବୁଲି ବାହୁଡ଼ିବାକୁ ଗଡ ଛ ଘଡ଼ି । ମାମୁଁ ମାଈଁଙ୍କର ଶ୍ୱାସରୋଗ ତାହା ଉପରେ ଆପୁର ନିଶା, ଗଡସାର ନିଦ ହୁଏ ନାହିଁ ଙ୍ଗଁ ଟୁଁ ହୋଇ କାଶୁଥାନ୍ତି ପାହାନ୍ତିଆ ପହର ଅଣ୍ଟା ପବନ ଲାଗିଲେ ଟିକିଏ ନିଦ ମାଡ଼େ । ଚଣ୍ଡୀ ଭାବନାରେ ଆଜ ସେ ନିଦ ବ ନାହିଁ ।

ତହିଁ ଆରଦିନ ସକାଳେ ସାରେଇ ଅଣ୍ଟ ଯୋଡ଼କ ଲୁଣ୍ଢେଇ ପିଣ୍ଡାରେ ଗୁମ ହୋଇ ବସିଛି । ଖରା ପିଢ଼ା ଉପରୁ ମଚି ବାଡ଼ାରକୁ ଗଡ଼ିପଡ଼ିଲାଣି, ମାମୁଁ ଉଠି ଆସି ସାରେଇକୁ ଦେଖି କହିଲେ, "କରେ ବାପ ଗୁମହୋଇ ବସିଛୁ ? ଯା ଯା, ବେଙ୍ଗଳା ଖେଳାଇ ଦେ ଯା । ଭଙ୍ଗା ପୁଞ୍ଜିଟା ଉଣବଣ ହୋଇପଡ଼ୁଛି ।" ସାରେଇର ଏକା ପଦେ କଥା, "ନା, ମୁଁ ଘରକୁ ଯିବ ।" ମାମୁଁ ଆଜ ବ ଢେର ବୁଝାଇଲେ । ଟେକାଟେକ କେତେ କଥା କହିଲେ । ସାରେଇର ସେହି ଉତ୍ତର, "ଘରକୁ ଯିବ ।" ମାଇଁ ବନ୍ଧଣାରୁ ଉଠିଆସି ଅଖି ମଳି ମଳି ସବୁ କଥା ଶୁଣୁଥିଲେ, ଏକାବେଳେ ଖପାଟା ହୋଇ କହିଲେ, "ଯିବୁ ଯାଉ ଯା । ଯିବ - ଯିବ ଭଜନମାଳ ଧରିଛୁ ଯେ ?" ସାରେଇ କହିଲା—"ମୋ ବାପର ଯାହା ସବୁ ଚଳବସ୍ତ୍ର ଆଣିଥିଲ, ଫେରାଇ ଦିଅ ।" ମାଇଁ ସେହିପରି ତେଜରେ କହିଲେ, "ଚଳବସ୍ତ୍ର କ'ଣରେ । ପାଣ୍ଡି ପଇସା ଦ'ଖଣ୍ଡ ଆଣିଥିଲେ, ଯା, ଯା, ଉଇ ଖାଇଯାଇ ପଡ଼ିଚ, ମୁଣ୍ଡାଇ ଯେଉଁ ଯା । ବରଷେ ନୁହେଁ, ଦ' ବରଷ ନୁହେଁ, କୋଡ଼ିଏ କୋଡ଼ିଏ ବର୍ଷକାଳ ଖୁଆଇ ପିଆଇ ଭେଣ୍ଡିଆଟିଏ କରିଦେଲୁ. ଏଣିକ ମୁଣ୍ଡକୁ ହାତ ପାଇଲା କ ନା ? ମୁଁ ତାଙ୍କୁ ବାରବାର ସେତେବେଳେ କହୁଥିଲି—"ପରପୁଅ ଗୁଣ୍ଡାରୁ ଅ ସେ ବାଲେଇରେ ପଣନା । ଶୁଣିଲେ ନାହିଁ; ଏବେ ଭୋଗ ।" ସାରେଇ ଗୁମ ହୋଇ ଏକକାନିଆ ପାଞ୍ଚଣ ଖଣ୍ଡେ ଧରି ଉଠିଲା ।

ମଣ୍ଟ ବଣାଲର ସରବତ ପନ୍ଦର ମାଣ ଗୁଷ ଜମି ଥିଲା । ଜମିଟା ବଡ଼ ଭଲ, ମଟାଳିଆ, ଏକଚକିଆ, କଳନ୍ଦ । ପୀତେଇ ପାଢେ ସେ ଜମିଟା ଆପଣା ନାମରେ କରିନେବା ଲାଗି ଢେର ଫନ୍ଦି ଫିକର କରିଥିଲେ । ଜମିଦାର ଶ୍ୟାମ ସ୍ୱାଇଁଙ୍କୁ ଲାଞ୍ଚ ଉସପତ୍ ଯାଚିଥିଲେ, ମାତ ସ୍ୱାଇଁଏ ବଡ ବିବେକି ଲୋକ, ପୁଣି ଗାଁର ପାଞ୍ଚ ଜଣଙ୍କ ଡରରେ ସେହି ମଣ୍ଟ ବଣାଲ ନାମରେ ରଖିଦେଇଛନ୍ତି । ସାରେଇ ଗାଁରେ ମୂଲ ଲାଗେ । ଗୁଷ ସଜ ନାହିଁ, ଜମିଗୁଡ଼ିକୁ ବଖରା ଲଗେଇଦେଲା ।

ସାରେଇଟି ବଡ଼ କାମିକା, ପର ନ-ଛରେ ନଥାଏ, ଆପଣା ଦୁଃଖଧନ୍ଦାରେ ଲାଗିଥାଏ । ସଞ୍ଜବେଳେ ପାଇଟିରୁ ଆସି ମୁଡ଼ିମୁଡ଼ା ପୁଞ୍ଜାଏ ପାଟିରେ ପକାଏ । କୋଡ଼ିଟାଏ କାନ୍ଧରେ ପକାଇ ବାହାରି ପଡ଼େ । ଆପଣା ଉଡ଼ିରେ ବର୍ତ୍ତମାନ ରହିବା ଭଳି ଗୋଟିଏ ସାନ ଘର ବନାଇଲା । କାନ୍ଥ ଯେମିତ ଛୁଡ଼ା କରିଛି, ମଉସା ପିଉସା ଗାଁର ଆଉ ଆଉ ପାଞ୍ଚଜଣ ଡାକରା ନାହିଁ, ହକରା ନାହିଁ, ସାରେଇ କାହାରିକୁ କିଛି କହି ନାହିଁ, ଧାଇଁ ଆସିଲେ, ଆପଣା ଆପଣା ଘରୁ କାଠ, ବୁଟା ବାଉଁଶ ଆଣି ଘରଟାଏ ଛୁଡ଼ା କରାଇଦେଲେ । ସାରେଇର ଆଉ ବଳ—ଖରା କଳନ୍ଦ । ଧାନ ପାଚିବା:ରୁ ଭରଣ ସରକ ଭାଗ ପାଇଲା । ବର୍ଷକ ଖାଇବା

ଭଲ କରୁ ରଖି ସବୁ ଧାନଗୁଡ଼ିକ ବିକି ପକାଇଲା । ସେହି ଟଙ୍କାରେ ହଳଅା ବଳଦ, ଗୃହ ସରଞ୍ଜାମ କିଣି ଆପଣା ଗୃହରେ ଲଗିଗଲା । ବର୍ଷ ଗୃହଟା ଭିତରେ ଘାଟେଇ ବାପଅମଳକା ଘର ଛୁଡ଼ା କରିଦେଲାଣି । ସେହିପରି ଢନ ପ୍ରସ୍ତ ଘର, ମାଇ ଅଣ୍ଡିସ ଦେଢ଼ ବୋଢ଼ ଗୋରୁ ପରି ଧାନ ପାଞ୍ଚ ଟ୍ଟ'ଟା ମରେଇ ଛୁଡ଼ା ।

ବନ୍ଧୁ ବାନ୍ଧବ ହମଦରଦୀ ପାଞ୍ଚ ଜଣ କେତେଥର କହିଲେଣି, 'ଆରେ ଘାଟେଇ ! ତୁ କଂ ସବୁଦିନେ ଡାଙ୍ଗୁଆ ମାଙ୍ଗୁଆ ହୋଇ ରହିଥିବୁ ? ଏଣିକି ପିତୃଲୋକ ପାଣି ମୁଠାଏ ପାଇବାର ବାଟ କର । ଘାଟେଇ ବି ବୁଝିଲାଣି, ବାହାଟା ନ ହେଲେ ନୁହେଁ । କାମ ପାଇଁଟିରୁ ଆସି ରନ୍ଧାବଢ଼ା କରିବାଟା ଏଣିକି ଦିକ୍ ଲାଗିଲାଣି । ବାଧିକା ପଡ଼ିଲେ ପାଣି ମନ୍ଦାଏ ଦେବାକୁ, ଗୋଡ଼ ହାତରେ ହାତ ବୁଲାଇ ଦେବାକୁ କେହି ଭରସା ନାହିଁ । ବାହା କରିବାକୁ ମନ କଲା ସତ, ହେଲେ ଏତେ ଟଙ୍କା କାହିଁ ? ଆଉ ପାଠକ ଜାଣନ୍ତି ଯେ, ମନ କଲାତ ବାହା ହୋଇପଡ଼ିଲା । କପାଳି କେଜାଣି, ବଳରାମ ଗୋତ୍ରୀ ପନ୍ଥାରେ କନ୍ୟାର ବଡ଼ ଅଭାବ, ପୁଣି ଦର ଖୁବ ଚଢ଼ା । ଗୋଟିଏ ଗୋଟିଏ କନ୍ୟା ପାଞ୍ଚଶଠାରୁ ହଜାର ଦୁଇ ହଜାର ଟଙ୍କାରେ ବିକି ହେବାର ଏ ଲେଖକଙ୍କୁ ଜଣା । ଅଜଣା ପାଠକ ଆପଣେ ପଚାରିବେ, କନ୍ୟାର ଦାମ ଏତେ ଉଣା ଅଧିକ କିଆଁ ? କନ୍ୟାଗୁଡ଼ିକ ଫୁଟ ଗଜରେ ମାପ ବା ଦଣ୍ଡି ତରାଜୁରେ ଓଜନ ହେଉଥିବେ, ମାପ ବା ଓଜନ ଉଣା ଅଧିକରେ ଦର ଉଣା ଅଧିକ ହୁଏ ।' ନାହିଁ ନାହିଁ ତା ନୁହେଁ, ଆମ୍ଭମାନଙ୍କୁ ଭିତରଆ କଥା ଭଲ ଜଣା । ସେଥିର ଅସଲ ହାଲ ଚମ୍ଭୁକରେ ଦୁଇ ଗୃଣ କଥାରେ କହିବୁ । ବଳରାମ ଗୋତ୍ରୀ ପନ୍ଥାରେ ନଥିଲା ଲୋକ ନାହାନ୍ତି ବୋଲନ୍ତୁ, ସେମାନେ ଖୁବ ପରିଶ୍ରମୀ ଏବଂ ଖରଚପନ୍ଥରେ ଖୁବ ଚଗା । ବଳେ ସମସ୍ତଙ୍କ ହାତରେ କିଛୁ କିଛୁ ଟଙ୍କା ଜମିଯାଏ କନ୍ୟାର ବୟସ ବା ରୂପଗୁଣ ବିଷୟରେ କିଛୁ ଚିନ୍ତା ନାହିଁ— ବରର ବୟସକୁ ଧରି କନ୍ୟାର ଦରଦାମ କଷାଯାଏ । ବରର ବିବାହର ବୟସ ହେଲା । ଏଣେ ଘରେ ତେତେ ଟଙ୍କା ନାହିଁ, ଆପେ ପରିଶ୍ରମ କରି ଟଙ୍କା ଜମାଏ । ଟଙ୍କାଟା ଠିକ୍ ହେଉଁ ହେଉଁ ବରର ବୟସ ହୋଇଗଲାଣି ପଚାଶ କିମ୍ବା ଧନବନ୍ତ ଲୋକ ଦୋଜବର ଓ ତେଜବର ବୟସ ଷାଠିଏ । ଏଣେ କନ୍ୟାଟିର ବୟସ ୧୦ ୧୧ ଭିତରେ । ସେହି ସମସ୍ତ ଜାଗାରେ କନ୍ୟାର ଦର ବଢ଼ିଯାଏ । ଦରର ଏହିପରି ହାଲ୍ ଜାଣିବ । ଘାଟେଇ ବାହା ହେବା ଲାଗି ଟଙ୍କାଏ ମସାଏ ଯାହା ହାତରେ ପଡ଼େ ଥୋଇଦିଏ । ଘରକଣରେ ଅନ୍ଧାରିଆ ଗୋଟିଏ ଠେକ ପୋତିଛୁ, ସେଥିରେ ପକାଇଦିଏ ।

ଅହରି ପାଞ୍ଚବର୍ଷ ଗଲାଣି । ଘାଟେଇ ଛତିଶିକା ବୟସ ଚାଳିଶି ଭିତରେ, ବାହା ହେବା ଭଲ ଟଙ୍କା ଜମିଗଲାଣି ବୋଲି ମନରେ ଠିକ୍ କଲା । ବାହାପାଇଁ ସଜ

ହେଲା, ହେଲେ ସେ କଣ ଆପେ କନ୍ୟା ଖୋଜିଯିବ ? ପୁରୋହିତ ଖେମେଇ ମିଶ୍ରଙ୍କୁ ମଧ୍ୟସ୍ଥ କଲା । ମିଶ୍ରେ ଚାରିଆଡ଼େ ଢେର ଆଖି ଫେରାଇଲେ । ସାରେଇ ଦିନେ ମିଶ୍ରଙ୍କୁ କମଳୀ କଥା ଇଶାରାରେ କହିଲା । ରାଘବ ପାଢ଼ର ସାନ ଝିଅର ନାମ କମଳୀ, କନ୍ୟାଟି ବେଶ୍ ଡୌଲ, ଲାଜକୁଳୀ ଦିନ ରାତି ଘରକାମରେ ଲାଗିଥାଏ, ବାପର ଢେର ସେବା କରେ । ଗାଁ ମାଇକିନିଆମାନେ ତାହାର ଢେର ପ୍ରଶଂସା କରନ୍ତି । ସାରେଇ ପିଲାଦିନରୁ କମଳୀକୁ ବଡ଼ ଭଲପାଏ । ରୋଜ ଦୁଇ ଓଳି ବିଲକୁ ଯିବାଆସିବାବେଳେ କନ୍ୟାଟିକୁ ଚାହିଁ ଚାହିଁ ଦେଖେ । ସାରେଇ ବିଲ ବାହୁଡ଼ା ବେଳେ କମଳୀ କଳସୀଟିଏ କାଖେଇ ପାଣି ଆଣି ଯାଉଥିବା ଦେଖେ । କମଳୀର ଠିକ୍ ସେଇଟା ପାଣିଅଣା ବେଳ । ଘରେ ମାଠିଆରେ ପାଣି ଥିଲେ ବି ସେ ପାଣି-ଗୁଡ଼ାକ ନାଳରେ ଢାଳିଦେଇ କଳସୀ କାଖେଇ ବାହାରିପଡ଼େ । ଚାରିଆଡ଼କୁ ଚାହେଁ, କେହି କୁଆଡ଼େ ନ ଥିଲେ କଣେଇ କଣେଇ ସାରେଇକୁ ଦେଖୁଥାଏ ।

ପାଞ୍ଜିରୁ ଭଲ ଦିନଟାଏ ଦେଖି ମିଶ୍ରେ ରାଘବ ପାଢ଼ଙ୍କ ପାଖରେ ପହଞ୍ଚିଲେ । ପାଢ଼ ବୋଧକରୁଁ କିଛି ଗନ୍ଧ ପାଇଗଲେଣି । ଅଖାପାଲ ଖଣ୍ଡେ ପାରିଦେଇ ମିଶ୍ରଙ୍କୁ ବହୁ ଆଦର ସମ୍ମାନରେ ବସାଇଲେ । ନାସ ଶୁଙ୍ଘାଶୁଙ୍ଘି ଦୁଃଖସୁଖ ଚାରିପଦ ହୋଇଗଲା ଉତ୍ତାରେ ମୂଳ କଥା ଆରମ୍ଭ ହେଲା ।

ମିଶ୍ରେ କହିଲେ, 'ପାଢ଼େ ! ତୁମ କମଳୀଟିକୁ ସାରେଇକୁ ଦେଲେ ଭଲ ହୁଅନ୍ତା ନାହିଁ ।

ପାଢ଼େ—ହେଉ ହେଉ, ମୋର ମନା ନାହିଁ ।

ମିଶ୍ରେ— ପିଲାଟି ବଡ଼ ଭଲ, ଖୁବ୍ ଦୁଃଖସୁଖିଆ ।

ପାଢ଼େ—ହେଉ ହେଉ, ମୋର ମନା ନାହିଁ ।

ମିଶ୍ରେ—ଝିଅଟି ଖୁବ୍ ସୁଖରେ ରହିବ ।

ପାଢ଼େ—ହେଉ ହେଉ, ମୋର ମନା ନାହିଁ ।

ମିଶ୍ରେ—ତେବେ ଖର୍ଚ୍ଚପତ୍ର କଥା ।

ପାଢ଼େ—''ହଁ ହଁ ସେଇ ଅସଲ କଥାଟା ଆଗେ ହେଉ । ମୁଁ ସଫା କହିଦେଉଛି, କନ୍ୟାସୁନା ନଗଦ ହଜାରେ ଟଙ୍କା, ଏଥିରୁ ପଇସାଏ, ମଣାଏ, କଡ଼ାଏ ଊଣା ଅଧିକ ନାହିଁ, ବୁଝିଲେ ମିଶ୍ରେ ! ମୁଁ ନ-ଛ ଜାଣେ ନାହିଁ, ଯାହା କହିବାର ସଫା କହିଦିଏ, ଏଁ, କ'ଣ କହୁଛନ୍ତି ମିଶ୍ରେ ?'

ମିଶ୍ରେ ଟିକିଏ ଗୁମ୍ ଖାଇ କହିଲେ, 'ଟିକିଏ ବୁଝି ସୁଝି ବୋଲନ୍ତୁ, ସାରେଇ ବଡଘର ଏତେ ଦେଇପାରିବ କିଂପା ? ସେ ପାଞ୍ଚ ଶହ ତକ ଯାଇପାରେ ।'

ପାଢେ ଟିକିଏ ତେଜରେ କହିଲେ, 'ମୋର ଆଉ ଦୁଇ କନ୍ୟା ସକାଶେ ସେବକଠୋକ ଦୁଇ ହଜାର ପାଇଛି, ସେଇଟା ତ ତୁମ ଆଗର କଥା, ଫେର ଏପରି ଅନ୍ୟାୟ କିଁପା କହୁଛ ?'

ମିଶ୍ରେ କହିଲେ, ସେ କଥା ଏ କଥା ଢେର ତଫାତ୍ । ସେ ବର ଯୋଡ଼ାକର ବୟସ ଷାଠିଏ ଷାଠିଏ ହୋଇଥିଲା, ଦୁହେଁଯାକ ଥିଲେ ଦୋଜବର । କନ୍ୟା ଯୋଡ଼ିକ ରାଣ୍ଡ ହୋଇ କିପରି ଦୁଃଖରେ ଅଛନ୍ତି, ଦେଖୁ ନାହାନ୍ତି ? ଏଣେ ଦେଖନ୍ତୁ, ସାରେଇ କାଲିକା ପିଲା ।'

ପାଢେ ଖପାଟା ହୋଇ କହିଲେ, ହୋଇ ହେ ମିଶ୍ରେ ! ତୁମେ ପାଠୁଆ ଲୋକଟା ହୋଇ ଏପରି ଅନ୍ୟାୟ କଥା କେମିତି କହିଲ ହେ ? ଆରେ, ସେମାନଙ୍କ କପାଳରେ ଥିଲା, ରାଣ୍ଡ ହେଲେ । ମୁଁ କଣ କହି ଦେଇଥିଲି, ରାଣ୍ଡ ହୁଅ । ବାପ ଜନ୍ମ ଦେଇଛି ବୋଲି କ'ଣ କର୍ମ ଦେଇଛି ।'

ମିଶ୍ରେ—ଯାଉ ସେ କଥା, ଆପଣଙ୍କ ସାଙ୍ଗରେ ବୋଲାବୋଲି କରିବ କ'ଣ ? ଆପଣ ଛୋଟଝିଅଟିକୁ ଟିକିଏ ଦୟା କରନ୍ତୁ, ସେଇ ପାଞ୍ଚଶରେ ମଙ୍ଗିଯାନ୍ତୁ ।

ପାଢେ—ହିକ ବେବହାରରେ ଦୟା ମାୟା କ'ଣ ମିଶ୍ରେ ? ହଁ ଆଉ ଗୋଟାଏ କଥା ବୁଝ, ମୋର ଅର ଦ ଝିଅଙ୍କର ୯ ବର୍ଷ ଲେଖାଏଁ ହୋଇଥିଲା, ଏ ତ ଚଉଦ ବର୍ଷର ଝିଅ, ଯିମିତି ଘିବ, ଇଶାଣରେ ପଶିଦ । ଆମ ପଛାରେ ଏଡ଼େ ବଡ଼ କନ୍ୟା କାହିଁ ? ସ୍ତା ପିଛେ ସାତଲୁଆରେ କେତେ ଟଙ୍କା ସାରିଲଣି ? ପାଞ୍ଚଣ କହୁଛ—ଶିବପୁରର ସାଲୁ ପରିଡ଼ା ଓ ଗୋବିନ୍ଦପୁରର ଶ୍ୟାମ ମହାପାତ୍ର ଟଙ୍କା-ଥଳୀ ଧରି ମାସକୁ ତା ଦୁଆରେ ବସିଗଲେ, ତେତେବେଳେ ପାଞ୍ଚଶରେ ନ ଦେଇ ଏବେ ଦେବ କିଁପା ? ଆଉଗୁଡ଼ାଏ ବଜର ବଜର କରନା ମିଶ୍ରେ । ହଜାରେ ହେଲା ତ ବସ, ନୋହିଲେ ସିଧା ଡାଣ୍ଡ ପଡ଼ିଛି ।

କମଳୀ କବାଟକଣରେ ବସି ସବୁ କଥା ଶୁଣୁଥିଲା । ସେ ଏତେବେଳେ ସବୁ କଥା ବୁଝିଲଣି, ଭଉଣୀମାନଙ୍କ ଅବସ୍ଥା ଆଖିରେ ଦେଖୁଛି, ଆଉ ଜଣାଯାଏ, ସାରେଇକୁ ସେ ବଡ଼ ଭଲ ପାଏ । ଟଙ୍କା ଦରଦାମ ନ ପଟିବାରୁ ମିଶ୍ରେ ଉଠିଗଲେ । କମଳୀ ତୁନି ତୁନି ଢେର କାନ୍ଦିଲା ଦୁଇ ଉନ ଦନ ହେଲା ଖିଆପିଆ ଛାଡ଼ିଲଣି, କେବଳ କାନ୍ଦୁଛି । ମା ନାହିଁ, ତା ମନ କଥା ବା କିଏ ବୁଝୁଛି । ଶେଷରେ ଖୁବ୍

ଘୋଡାଏ ହେମନ୍ତ ବାଛନ୍ତି । ଗାଁର ଲେଖାଯୋଖା ଅପି ଅନ୍ଧୁଙ୍କୁ ଧରିଲେ । ମନର କଥା ଫିଟାଇ କହିଲେ, 'ଅନ୍ଧୁ ! ବାପା ଟଙ୍କା ଲୋଭରେ ଘୋଡାଏ ବୁଢା ମୋତେ ବାନ୍ଧ ଦେଲେ ମୁଁ ଯୋଗଶାସ୍ତ୍ର ଡେଞ୍ଚିପଡ଼ିବ । ଅପି ଆଉ ଅପି ଗ୍ରାମ ପାଧଙ୍କୁ କମଳୀ କଥା କହିବାକୁ ପାଧେ ଖୁବ୍ ଘୋଡାଏ ଖପା ହୋଇ ହିଁ ଅଙ୍କୁ ଢେର ଗାଳିଦେଲେ । ମୁଁ ତୋତେ ଚଉଦ ବରଷ କାଳ ଖୁଆଇ ପିଆଇ ବଢାଇଲି— ଆଜ କ'ଣ ନା ପାରିକି ଡେଞ୍ଚିପଡ଼ିବୁ ? ମର, ଦେଖେଁ ଭଲ କମିତ ମରିବୁ ? ଚଉଦ ବରଷକାଳ ଖାଇଛୁ ପିଇଛୁ, ଖ୍ୱତଲୁଗା ଦାମ ପାଞ୍ଚଶ ଟଙ୍କା ଗଣି ଥୋ— ତା ବାଦେ ମରିବୁ ତ ମର ଯା, ମୋର ମନା ନାହିଁ ।'

ପାଧେ ଘର ମୁହଁରେ ହିଁଅଟାକୁ ଗାଳିପୂଲିକ କଲେ ଯିନା, ହେଲେ ଘରରେ ବସି ଢେର ଚନ୍ତା କଲେ । ହିଁଅଟାର ଖିଆପିଆ ନାହିଁ, ମଲାଟା ପଣ ପଡ଼ିଛୁ । ସତକୁ ସତ ମନ ଦୁଃଖରେ ଯେବେ ବୁଡ଼ିମରିବ, ତେବେ ମୂଳ ବୁଡ଼ିବ ଯିନା । ଖୁବ୍ ଆଖି ଫେରାଇ ଦେଖିଲେ, କାଠ ଭିତରେ ଦୋଳବର ବା ଅଲ୍ଲଆଡ଼ା କେହୁ ନାହିଁ । ଏତିକି ହିଁଅଟାକୁ ପୋଷିବା ଖର୍ଚ୍ଚାନ୍ତ କଥା । ତହିଁ ଆରଦିନ ସକାଳେ ମିଶ୍ରଙ୍କୁ ଡାକ ପଠାଇଲେ । ଆଜ ପାଧଙ୍କ କଥା ଖୁବ୍ କଥିଲ—ସାବୁଲ ଭଲ । ଦୁଇ ଜଣ ବସି ଦରଦାମ ଠିକ୍ କରିନେଲେ । ସାତଶ ଟଙ୍କାରେ କଥା ଛିଡ଼ିଲା । ବର୍ତ୍ତମାନ ଗାଆଁର ପାଞ୍ଚ ଭଲଲୋକ ଆଗରେ ୱାରେଇ ଦେବ ଦୁଇଶ ଟଙ୍କା, ବାକି ପାଞ୍ଚଶ ବେଦୀ ମୁଣ୍ଡରେ ।

ୱାରେଇ ହିସାବ କରି ଦେଖିଲା, କନ୍ୟାସୁନା ପଡ଼ିବ ସାତଶ, ବାକି ଗଡ଼ ଠକଣରୁ ଉଣା ନୁହେଁ, ଗାଏ ଦୁଇ ପଦକୁ ହଜାରେ । ଘର ଭିତରେ ପୋତା- ପୋଠ କରି ଯାହା ରଖିଥିଲା, ଖୋଲାଖୋଲି କରି କାଢ଼ିଲା, ଟଙ୍କା ପଇସା ମିଶାଇ ଟ°୭୩/୭ । ମଲ ଯା, ଆହୁରି ଯେ ସ୍ତରିଶ ଲୋଡ଼ା । ଦୁଇଶ ଟଙ୍କା ଘରୁ କାଢ଼ି ଦେଲଣି, ବାକି ବନ୍ଦ କଲେ ସେ ଦୁଇଶର ଆଶା ଛାଡ଼ିବାକୁ ହେବ । ହେଉ, ପଛକ୍ରେ ବୁଝାବୁଝି । ଘରେ ବନ୍ଧନ ଘର ରଖି ଧାନ ସବୁ ବିକିଦେଲା । ଗୁଳ୍ଲା ହଲଆ ବଳଦ ହଲେ ରଖି ଗୋରୁ ଗୁଡ଼ାକ ବିକି ପକାଇଲା ।

ଆଜ ବାହା ଦିନ । ଦାଜା ପାଲିଙ୍କି କରି ୱାରେଇ ଯାଉଦେଲେ ଶଶୁର ଦୁଆରେ ହାଜର । ବର ପାଲିଙ୍କିରେ ବସିଛି, ପାଧେ ପିଣ୍ଡାରେ ବସି କାଣ ଶୁଙ୍କୁ- ଥିଲେ । ଘଡ଼ିଏ ବିତିଗଲା, ପୁରୋହିତ ଘନ ଘନ ଥର ଡାକିଲଣି, "ଆସ ପାଧେ ! ବରକୁ ବାଟବରଣ କରି ନିଅ ।" ପାଧଙ୍କ ମୁହଁରେ କଥା ନାହିଁ । ଗୁଡ଼ିଆ ମିଶ୍ରେ କଥାଟା ବୁଝିଗଲେ, କହିଲେ, "ପାଧେ ! ୱାରେଇ ହାତରେ ଟଙ୍କା ବାଟ ବରଣ କରି ଘରକୁ ଆଣ, ଟଙ୍କା ଗଣିଦେବ । ପାଧେ ଧଡ଼ପଡ଼ ହୋଇ ଉଠି ବରକୁ

ବାଟବରଣ କରିନେଲେ । ଟଙ୍କା ଗଣାଗଣି ପରଖା ପରଖିରେ ଘଣ୍ଟାଏ ବିତିଗଲା । ମଲା ଯା ! ଛଅଟା ଟଙ୍କା ପଡ଼ିଲା ଭେଣ୍ଟି । ଗାଁ ଲୋକେ ଟେଣ୍ଡର କୁହାବୋଲା କଲେ, ଜାମିନ୍ ହେଲେ—ବର୍ତ୍ତମାନ ଶୁଳ୍କକାର୍ଯ୍ୟଟା ସମାଧାନ ହୋଇଯାଉ, କାଲି ଟଙ୍କା ବଦଳାବଦଳି ହେବ । ପାଣେ ଠୁଲରେ ବସିଲେ ନାହିଁ । ବାରେଇର ଆଉ ବାଟ ନାହିଁ ସେଇଠାରେ ବରବେଶରେ ବସି ଘରର ଚଳଣି ପାଣ୍ଠି ହେଲ ସରଞ୍ଜାମ ସବୁ ଗାଁର ମଧୁ ମହାନ୍ତିଙ୍କୁ ଛ ଟଙ୍କାରେ ବନ୍ଧକଦେଲା । କୁଆଁ କା କରିବାକୁ ହାତଗଣ୍ଠି ଫିଟିଲା । ପାଣେ ବର ବିଦା କରିବା ପାଇଁ ଦାଣ୍ଡ ଦୁଆରେ ଲହର ପହର ହେଉଛନ୍ତି ଘରେ ପଶିବାକୁ ନାହିଁ, ବେଳ ଉଚ୍ଛୁର ହୋଇଯାଏ, ବାଜାବାଲା ବେହେରା ଚଲଖିଆ ମାଗିବେ ।

ବାରେଇ ତ ଘରକୁ ଡାଙ୍ଗୁଆ ମଣିଷ; ବରକନ୍ୟାକୁ ବନ୍ଧାଇ ନେଉଛି କିଏ ? ବାରେଇ ଖୁଡ଼ୀ, ମାଉସୀ, ଅପା ପାଞ୍ଚ ଜଣ ଅଧିଅଙ୍କୁ କହି ଆସିଥିଲେ । ଅନ୍ତକସରେ ଗାଁ ମାଇକିନିଆମାନେ ବି ଧାଇଁଆସି ବାରେଇ ଘରେ ଭିଡ଼ି ହୋଇଯାଇଛନ୍ତି । କନ୍ୟାଟି ଦୋଲମୁକୁଟ ମୁଣ୍ଡରେ କଳସପାତ୍ରଟି ଧରି ନଇଁ ନଇଁ ଆଗରେ ଚାଲିଛି । ଖିଲକାଡ଼ିଟିଏ ନଡ଼ିଆଟିଏ ଧରି ବର ପଛରେ । ଭଣ୍ଡାରୁଣୀଟା ଆଗେ ଦେଖି ପକାଇଲା, କନ୍ୟାର ପେଟଟା ବାହାରି ପଡ଼ିଛି, ନସରପସର ହୋଇ ଚାଲିଛି, ଭଲ କରି ଚାଲିପାରୁ ନାହିଁ । ଭଣ୍ଡାରୁଣୀ ଆଉ ପାଞ୍ଚ ମାଇକିନିଆଙ୍କ ବାହୁ ଚିପି ଦେଇ ଖାଇଲା ହାତ ଆଙ୍ଗୁଳି ବଢ଼ାଇଦେଇ କଣ ଦେଖାଇଦେଲା । ସବୁ ଅଧିଅଯାକ କନ୍ୟାକୁ ଛାଡ଼ି ଅଲଗା ହୋଇଗଲେ; ଟେକାଟୁଡ଼ାକ ହସି ହସି କେହି ହାୟ ହାୟ କରି ଅପଣା ଘରକୁ ପଳାଇଗଲେ । କେହି କହୁଥାଏ ପାଞ୍ଚ ମାସ; ଜାଣିବା ମାଇକିନିଆମାନେ ଠିକ୍ କରିନେଲେ, ସାତ ମାସରୁ ଊଣା ନୁହେଁ । ହାମଦରଦୀ ମାଉସୀ ପିଉସୀମାନେ ଘରକୁ ଯାଇ କାନ୍ଦିବାକୁ ବସିଗଲେ । ହାୟ ! ହାୟ ! ଛୁଆଟା ଅଭିଆଡ଼ା ଥିଲା ତ ଥିଲା, ସର୍ବସ୍ୱ ସାରି ସାତ ପୁରୁଷଙ୍କୁ ନରକକୁ ଦେଲା । ଘର ଶନ୍‌ଶାନ, ବାରେଇ ଗାଲରେ ହାତ ଦେଇ କାନ୍ଥକୁ ଆଉଜି ବସିଛି । କମଳୀ କବାଟ ଉହାଡ଼ରୁ ଜିଭରେ ଚୁଁ ଚୁଁ କରି ବାରେଇକୁ ହାତ ଠାରି ପାଖକୁ ଡାକିଲା । ପେଟ ଉପରେ ମୁଣିଏ ଟଙ୍କା: ତା ଉପରେ ଯୋଡ଼ାଏ ବେଢାଣ ଖଦି କଣ୍ଠି ଗୁଡ଼ିଆ ହୋଇଛି; ଫିଟାଇ ପକାଇ ଫିଣ କରି ଅଳିଟା ତଳେ ପକାଇଦେଲା । ବାରେଇ ଯେମନ୍ତେ ସ୍ୱପ୍ନ ଦେଖୁଛି, ସ୍ୱର୍ଗରୁ ଦେବୀଟିଏ ଓହ୍ଲାଇ ଆସିଲେ । ପଚାରିଲା; "ଏ କଣ ?" କମଳୀ କହିଲା, "ଏ ତୁମ ଟଙ୍କା, ବଳଦ, ଗାଈ, ପାଣ୍ଠି, ଚଳଣି ଯାହା ବନ୍ଧକଛ, ଟଙ୍କା ଦେଇ ଆଗ ଫେରାଇ ଆଣ, ତା ବାଦେ ଏ ଘରେ ପାଣି ଛୁଇଁବ ।" ବାରେଇ ଗଣି ଦେଖିଲା, ପୁରା ହଜାରେ ଟଙ୍କା । ପଚାରିଲା, ଆଉ

ତିନିଶ କଣ୍ଟା?" କମଲୀ କହିଲା "ଦୁଇ ଅପାଙ୍କୁ ବିକି ଯେ ଟଙ୍କା ବାପା ପାଇଥିଲା, ଦଶ ମାଣ ବିଲ କିଣିଛୁ; ବାକି ତିନିଶ ଅଛି। ଅପାମାନେ ବଡ଼ ଦୁଃଖରେ ଅଛନ୍ତି, ଏତକ ଟଙ୍କା ଉକୁଣିକା ସେମାନଙ୍କ ପାଖକୁ ପଠାଇଦିଅ।"

ଉପର ଓଳି ଗାଁ ଗୋହିରୀ ମଝିରେ ଗାଧବ ପାଣ୍ଡେ ଡାକ ପଠାଇ ବାସ୍ତା ପରି ଧାଉଁଛନ୍ତି। ବୀରେଇ ଦୁଆରେ ଡକା ପକାଇ ପରସ୍ତେ ଗଡ଼ିଲେ, ଖାଲି କହୁଛନ୍ତି, "କମଲୀ ମୋ ନେକରେ ଛୁରୀ ମାରିଲୁ, ମୋ ଟଙ୍କା ଦେ।" କମଲୀ କହିଲା, "ବାପା! ତୋର କି ଟଙ୍କା? ମୋ ଟଙ୍କା ମୁଁ ଆଣିଛୁ।" ଗାଁ ଲୋକେ ଶୁଣି ଧାଇଁଲେ। ସେମାନେ ଗାଧବ ପାଣ୍ଡେ ଉପରେ ଆଗରୁ ବଡ଼ ଖପା ହୋଇଥିଲେ। ତିନି ତିନିଟା ଝିଅ ତିନି ହଜାରରେ ବିକିଲା, ସେମାନଙ୍କ ମୁହଁରେ ମୁଡ଼ି ଗୁଣ୍ଡିଟାଏ ବି ବାଜି ନାହିଁ। ବିଭାବେଳେ ନାନ୍ଦୀମୁଖୀ ଆଉ ତିଳକାଞ୍ଚନ ଦକ୍ଷିଣା ବିଷୟରେ ପୁରୋହିତଙ୍କ ସାଙ୍ଗରେ କିଛି ବୋଲାବୋଲି ହୋଇଥିଲା। ସେ ତ ଆଗରୁ ନିଆଁ ହୋଇଥିଲେ। ପଦ୍ମୁଖିଯାଇ ହୁକୁମ ଦେଲେ, "ମାର ଚଣ୍ଡାଳ ମାଉଁସ ବିକାଳୁ।" ପାଣ୍ଡେ ଦେଖିଲେ ଗ୍ରାମ ଲୋକ ସମସ୍ତେ ମାର ମାର କହି ଧାଉଁଛନ୍ତି, ତାଙ୍କ ପଟକୁ କେହି ନାହିଁ। ଯୋଡ଼ାଏ ତିନିଟା ଧକା ଧକି ଖୁଆ ବି ବାଜିଗଲାଣି। ଟଙ୍କା ମାଗିବେ କଣ, ଘରମୁହାଁ ଧାଉଁଛନ୍ତି। ପିଲାଗୁଡ଼ାକ ହାତତାଳି ଦେଇ ପଛରେ ଧାଉଁଛନ୍ତି, ପାଣ୍ଡେଙ୍କ ଉପରେ ଢେଲା ଧୂଳି ବୃଷ୍ଟି ହେଉଛି, ତିନି ଜାଗା ହାମୁଡ଼ି ପଡ଼ି ଆଣ୍ଠୁ ଗଣ୍ଠି ଛଡ଼ିଗଲାଣି। ପାଣ୍ଡେଙ୍କୁ ଦିନବେଳେ ଆଉ କେହି କେବେ ଗାଁ ଦାଣ୍ଡରେ ଦେଖି ନାହିଁ। କମଲୀ ନାମରେ ଧନ୍ୟ ଧନ୍ୟ ପଡ଼ିଗଲା।

ବୀରେଇ ବାହାର ଆସିବା ଦିନଠାରୁ ମାମୁଁ ମାଇଁ ବଡ଼ ବେହାଲରେ ପଡ଼ିଲେଣି। ଆଗେ ବୀରେଇ ଡରରେ ଚଣ୍ଡୀ ଗୋଠରୁ ଗୋରୁ ବା ସରେଇରୁ ଧାନ ଲୁଗ୍ଚୋରି କରି ବିକୁଥିଲା, ଏବେ ଡାକଫୁକାର ଦିନବେଳେ ବିକି ଦେଉଛି। ବାପା ମା କହିଲେ ବାଡ଼େଇବାକୁ ଧାଏଁ, ସେମାନେ ଡରରେ କିଛି କହିପାରନ୍ତି ନାହିଁ। ପୁଅଟା କଥା କାହାକୁ ବା କହିବେ, ତୁନି ହୋଇ ପଡ଼ିଥାନ୍ତି। ବର୍ଷ ଦୁଇଟା ଭିତରେ ଅଠେଇ ବୋଡ଼ିଆ ପଲଟାରେ ଛୁଡ଼ା ଲଞ୍ଜି ଖଣ୍ଡେ ବି ନାହିଁ। ଗଛ ପରି ତିନିଟା ମଇଁଷି ଝାଡ଼ଝୁଡ଼ି ଏଣେ ଚାଷଟା ବି ସେହିପରି। ଶ୍ୱାସ ବେମାରଟା ପାଣ୍ଡେଙ୍କୁ ଚଳାଇଲାଣି, ପଣ୍ଡାରୁ ଫେଲାଇବାକୁ ନାହିଁ, ବଳବାଡ଼ି ପିଟିବ କ'ଣ? ଚଣ୍ଡୀତ ମୌଜରେ ଲଗୁଛି, ବଳକୁ ପିଟିବ କଣ? ଗ୍ରାମପୁରିକ ମୂଲିଆଙ୍କ ଜମା, ମୂଲିଆ ଦଶା ଗୌଣୀ ବୁଣିବାକୁ ଯେତେବେଳେ ତ ଶାଞ୍ଜ ଗୌଣୀ ପଡ଼ିଲା ବିଲରେ, ଆଉ ପାଞ୍ଚ ଗୌଣୀ ମୂଲିଆଣୀର ଢେଙ୍କିଶାଳରେ। ପାଣ୍ଡେଙ୍କ ପାଖରୁ ମୂଲ ନେଇ ଆପଣାର ବିଲ ଦାଛୁଯାନ୍ତି। ଏଥିରୁ ଯାହା ଚାଷ ହେବ, ସମସ୍ତଙ୍କୁ ଜଣା।

କୋଇଲି—"ଆପେ ଚଷିବୁ ପଗ୍ ବୃଷ
ଛଡ଼ା ଯୋଡ଼ା ଅଧା ଭୃଷ,
ମୂଲିଆ ବୃଷ ଫସରଫାସ୍
ଯେ କେତେ ପୁଞ୍ଜା କଲେଇ ଖଳାକୁ ଆସେ, ଖଜଣାକୁ ନଅଣ୍ଟ ।

ଏଡ଼କବେଳେ କ'ଣ ହେଲା କି ଗାଁରୁ ଢେର ବଳଦ ଗାଈ ଚୋରି ଗଲା। ଆଜି ଶୁଣାଗଲା ସାମଲଘର ବଳଦ ଚୋରି ତ କାଲି ପଣ୍ଡାଘର ଯୋଡ଼ାଏ ଗାଈ ମିଳୁ ନାହାନ୍ତି । ମାସ ଛଅଟା ମଧ୍ୟରେ ଦଶ ପାଞ୍ଚ ଗଣ୍ଡା ଗୋରୁ ଚୋରିଗଲେଣି । ଗାଁଯାକ ଡକା ପଡ଼ିଗଲା । ଚୋର ଧରିବା ଲାଗି ଗାଁଯାକ ଭୂଜ ଭୂଜ ବସ୍ତିର ଜଣ ଛକିଜଗିକରେ ରହିଗଲେ ।

ଦିନେ ଅଧରାତି ବେଳେ ପାଣ୍ଡିଆ ପାଟେ ପୁଅ ଚଣ୍ଡିଆ ଆଉ ଦୁଇ ଜଣ ବାହୁର ଟୋକା ଯୋଡ଼ାଏ ବଳଦ ବାନ୍ଧି ଘେନି ବିଲ ମଝିରେ ଯାଉଥିଲେ । ଗୋଟାଏ ଲୋକ କୁହାଟଟାଏ ମାରିଦେଲା । କୋଡ଼ିଏ ତିରିଶ ଜଣ ଚାରିପଟରୁ ବେଢ଼ିଗଲେ । 'ଆଉ ଚୋରେ କାହିଁ ଯିବେ ? ଲଙ୍ଗଳ ଦଉଡ଼ାରେ ବାନ୍ଧ ଛନ୍ଦ କାଠି ମୁଠିଆ କରି ବାନ୍ଧି ଯକାଇଲେ । ମାଡ଼ ତ ମାଡ଼, ଚୋରଗୁଡ଼ାକଙ୍କର ଚେତା ବୁଡ଼ିଲାଣି । ଚୌକିଆ ଗୋରୁ ସହିତ ଚୋରମାନଙ୍କୁ ଥାନାକୁ ଘେନିଗଲା । 'ଚୋର ମା ଲାଜରେ ନକାନ୍ଦେ' ପାଟ ପାଟାଣୀ ବୁଢ଼ାବୁଢ଼ୀ ଯୋଡ଼ିକ କବାଟ ଦେଇ ଘର ଭିତରେ ଧକେଇ ଧକେଇ କାନ୍ଦୁଛନ୍ତି । ଗାଁ ଗୋଟାକ ବାଡେ, ହେଲେ ଖାଇରେଇ ମାମୁ ମାର୍ଜିଙ୍କର ଜିକାଲ ସହିପାରିଲା ନାହିଁ । ସଦର କଚେରୀକୁ ଧାଇଁଲା ଟାଣୁଆ ଓକିଲ ମୁକ୍ତାର ଯୋଡ଼ାଏ ଦେଲା, ଖୁବ୍ ଲଢ଼ିଲା । ବମାଲ ଗ୍ରେପ୍ତାର ଆଉ କଣ ରକ୍ଷା ଅଛି, ଚଣ୍ଡିଆର କଠିନ ପରିଶ୍ରମ ସହିତ ମିଆଦ ଦେଢ଼ ବର୍ଷ ।

ବିପଦ ଯେ ସଞ୍ଜୁଆ ଅନ୍ଧାରପରି ଘୁରିଆଡ଼ୁ ମାଡ଼ିଆସେ । ଚଣ୍ଡି ବିଭାଘରକୁ ପାଟେ ମଧୁ ସାହୁ ମହାଜନକୁ ଗୁଜା ଲେଖିଦେଇ ପାଞ୍ଚଶ ଟଙ୍କା କରଜ ଆଣିଥିଲେ । ପାଟଙ୍କ ମରେଇରେ ଢେର ଧାନ ଥିଲା, ପାଟେ ସେ ଧାନ ବିକିଦେଇ ଦେଣା ସୁଝିବାକୁ ବସିଥିଲେ, ପାଟାଣୀ କରିବାକୁ ଦେଲେ ନାହିଁ । କହିଲେ, 'ଖାଇରେଇ ବିଲରୁ ଯେ ଧାନ ଆସିବ, ଅଲଗା ଖଳା ମୁଣ୍ଡରେ ବିକିଦେଇ ଦେଣ ଶୁଝିଟ ହେବ ।' ଖାଇରେଇ ତ ତାହାର ବିଲ ଘେନିଗଲା, ଘରୁ ତ ଧାନ ମିଳିଲା ନାହିଁ, ଦେଣାଟା ବଢ଼ିଗଲା । କଳନ୍ତର ଅଗରେ ଘୋଡ଼ା ଦଉଡ଼ିପାରେ ନାହିଁ । ମହାଜନ ମୂଳ କଳନ୍ତର ମାମଲା ଖର୍ଚ୍ଚ ବାରଶ ଟଙ୍କାର ଡିକ୍ରୀ କରି ରଖିଥିଲା । ଏଡ଼କବେଳେ ପାଟଙ୍କ ଘରଦୁଆର ସହିତ ବିଲବାଡ଼ି ନିଲାମ କରି ନେଇ ପାଟପାଟାଣୀଙ୍କୁ ଘରୁ

କାଢ଼ିଦେଲା । ମାଳଆ ଚିରକୁଟ ଲୁଗା ଦେହରେ ଅଧଅଙ୍ଗୁଳିଏ ବହଳ ମଳି, ଖଣ୍ଡଗାର କାଟିଯାଉଛି, ଶେଷ ଶେଧୂଣୀ ପଣ ଯୋଡ଼ାଯାକ ଦାଣ୍ଡ ବରଗଛ ମୂଳରେ ପଡ଼ିଛନ୍ତି ।

ବୀରେଇ ଶୁଣି ଧାଇଁଲା । ଦେଖିଲା, ମାଈଁର ଚେତା ନାହିଁ, ମାମୁଁ ବେଳ ଖଣ୍ଡି ଆଣୁ ଲୁଣ୍ଡେଇ ବସିଛନ୍ତି । ବୀରେଇ କାହାକୁ କିଛି ନ କହି ମାଈଁକୁ ଲଉ କଲା; ମାମୁଁ ହାତଧରି ଧୀରେ ଧୀରେ ଆପଣା ଘରକୁ ନେଇ ଆସିଲା । ବୀରେଇ କମଳୀ ଦୁଇ ଜଣଙ୍କୁ ଗାଧୁଆପାଧୁଆ କରାଇଦେଇ ଦୁଇ ଖଣ୍ଡ ଧୋବ ଲୁଗା ପିନ୍ଧାଇ ଦେଲେ । ମାଈଁ ତଣ୍ଟିରେ ଭାତ ଗଳୁ ନାହିଁ । କମଳୀ ଅଧସେରେ ସରକ ଦୁଧରେ ମୁଠାଏ ଭାତ ଚକଟି ପିଆଇଦେଲା ।



# ମାଗୁଣିର ଶଗଡ଼

● ଗୋଦାବରୀଶ ମହାପାତ୍ର

ଖଲ୍ଲିକୋଟରେ ଦୁଇ ଲକ୍ଷ ଲୋକଙ୍କ ଭିତରେ ପ୍ରତିଦିନ ଯିବାଆସିବା ଚାଲିଛି । କେତେ ସଂସାରରୁ ଯାଉଛନ୍ତି, କେତେ ସଂସାରକୁ ଆସୁଛନ୍ତି । ଏ ଖବର ରଖୁଛନ୍ତି ଗୃହ ପରିବାର ବା ସାଇପଡ଼ିଶାର ଲୋକେ, କିନ୍ତୁ ଯେଉଁଦିନ ମାଗୁଣୀ ଏ ସଂସାର ଛାଡ଼ି ଚାଲିଗଲା, ସେ ଦିନ ଖବରଟା ଖଲ୍ଲିକୋଟର ପୁରପଲ୍ଲୀ ସବୁଆଡ଼େ ବ୍ୟାପିଗଲା । ଯେ ଶୁଣିଲା ସେ ମୁହୂର୍ତ୍ତେ ହେଲେ ନୀରବ ରହି ଦୁଃଖରେ କହିଲା, 'ମାଗୁଣୀ ଚାଲିଗଲା ? ଆହା, ବିଚରା ଚାଲିଗଲା !'

ମାଗୁଣୀ କିଏ ? ଖଲ୍ଲିକୋଟର ସେ ରାଜା ନୁହେଁ, ଏ କଥା ନିଶ୍ଚୟ । ସେ ରାଜ୍ୟର ନେତା ନୁହେଁ, ଏ କଥା ସମସ୍ତେ କହିବେ । ସେ କର୍ମୀ ନୁହେ, ଏ କଥା ସମସ୍ତେ ଜାଣନ୍ତି । ସେ କେବେ ସତ୍ୟାଗ୍ରହରେ ଯୋଗ ଦେଇ ନାହିଁ, କି ରଜାକୁ ଖଜଣା ଦେଇ ନାହିଁ । ତା ବେକରେ କିଏ ଫୁଲମାଳ ଲମ୍ବାଇ ନାହିଁ, କି ସେ କାହା ଗଳାରେ ମାଳ ଲମ୍ବାଇଦେବା ଦରକାର ପଡ଼ି ନାହିଁ, ଜନସମୁଦ୍ର ଭିତରେ କରତାଳି ଗହଳରେ ବକ୍ତୃତା ଦେଇ ନାହିଁ । ସେ କେବଳ କରିଛି ଗୋଟିଏ କାମ —ମୁଣ୍ଡର ଝାଳ ଗୋଡ଼ରେ ମାରି ଜୀବନପଥରେ ଲଢ଼େଇ କରିଛି । ସେ ଲଢ଼େଇ ଦେଶପାଇଁ ନୁହେଁ, ଜାତିପାଇଁ ନୁହେଁ, ତା ନିଜର ପେଟ ରୁଖଣ୍ଡିକ ପାଇଁ । ତଥାପି ମାଗୁଣିର ମୃତ୍ୟୁ ଖବର ପାଇ ସମସ୍ତେ କହିଲେ, 'ଆହା ବିଚରା ଚାଲିଗଲା ।'

ଗଡ଼ରେ ପଚ୍ଚାରିଲେ ତ ସମସ୍ତେ କହିବେ ମାଗୁଣୀ କିଏ, ଦୂର ଜଙ୍ଗଲ ତଳ ପଲ୍ଲୀଗାଁରେ ମଧ୍ୟ ତା'ର ପରିଚୟ ମିଳିପାରିବ । ମାଗୁଣୀ ଖଲ୍ଲିକୋଟର କେହି ନୁହେଁ, ସେ ଜଣେ ଶଗଡ଼ିଆ । ଦୁଇଟା ବଳଦ ଓ ସେ; ଏ ତିନି ମିଶି ଗୋଟାଏ ସଂଘ ଗଢ଼ିଥିଲେ, ଯାହା ଦୁଇଲକ୍ଷ ଲୋକଙ୍କ ମନକୁ ଛୁଇଁଗଲା ।

ପ୍ରତିଦିନ ଖଲ୍ଲିକୋଟ ଗଡ଼ରେ ସୂର୍ଯ୍ୟ ଉଦୟ ଓ ସୂର୍ଯ୍ୟ ଅସ୍ତ ହୁଏ । ଘନ-ଘୋର ବର୍ଷାଦିନେ ଲୋକେ ସୂର୍ଯ୍ୟ ନ ଦେଖି ମାଗୁଣୀକି ଦେଖି ବେଳ ଜାଣନ୍ତି । ମାଘମାସର ଜାଡ଼ରେ ପିଣ୍ଡାରେ ଘୋଡ଼ପୋଡ଼ ହୋଇ ଲୋକେ ବସିଥିଲାବେଳେ

ମାଗୁଣୀ ନିଜ ପଣତର ସାଙ୍ଗ ଦୁଇଟିଙ୍କୁ ଶଗଡ଼ରେ ଯୋଚି ପାହାଡ଼ ତଳେ ଗୀତ ବୋଲି ଚାଲିଯାଏ । ଲୋକେ କହନ୍ତି ମାଗୁଣି ସେମାନଙ୍କର ଗୋଟାଏ ଘଣ୍ଟା । ବର୍ଷାଦିନେ ବର୍ଷା ଘୁଞ୍ଚିଯାଇପାରେ, ଖରାଦିନେ ଖରାତାତି ଊଣା ହୋଇପାରେ କିନ୍ତୁ ମାଗୁଣୀର ଶଗଡ଼ ଦିନେ ହେଲେ ବନ୍ଦ ହୁଏ ନାହିଁ । କହେ, ରଜାଘରେ ଯୋଡ଼ା ମୋଟର କାର ଅଛି ସତ; କିନ୍ତୁ ତା ପଣ ଇଞ୍ଜିନଙ୍କର ନାହାନ୍ତି । ତା ଶଗଡ଼ ରଜାଘର ମୋଟରଠୁଁ ବଳେ । ବାର ବର୍ଷର ଅତି ପଣତର ସାଥୀ କାଳିଆ ଓ କଷରା ବଳଦ ଉପରେ ସେ ହାତ ମାରି ଅଇଁଷି ଦେଲେ ତା ଗାଡ଼ିରେ ପକ୍ଷ ଦିଅନ୍ତୁଏ । ଯେତେବେଳେ ସେ ଶଗଡ଼ ଉପରେ ବସି ଗୀତ ବୋଲିଦିଏ, ରାମ ଯେ ଲକ୍ଷ୍ମଣ ଗଲେ ମୃଗମାରି', ତା'ର ମୋଟର ଚାଲେ । ସେତେବେଳେ ଶ୍ୟାମଳ ତରୁ ପତ୍ର ତଳେ, ଗିରି କନ୍ଦର ଭିତରେ ପ୍ରତିଧ୍ୱନି ହୁଏ । ଅର୍ଦ୍ଧସୁପ୍ତ କୁକ୍କୁଟ କୁମ୍ଭାଟିଆ ତାକୁ ଉତ୍ତର ଦିଅନ୍ତି । ପକ୍ଷୀର ବୃନ୍ଦ କୁକୁରଦଳ ଚମକି ଉଠି ଗାଁରେ ଚହଳ ପକାଇ ଦିଅନ୍ତି । ଘଡଘଡ ଶବ୍ଦରେ ଶଗଡ ଚାଲିଯାଏ ଷ୍ଟେସନ ଅଭିମୁଖେ ।

ପନ୍ଦର ବର୍ଷର ମାଗୁଣି ବାର ବର୍ଷର ସାଥୀ ବଳଦଙ୍କୁ ଯେତେବେଳେ ଉଡ଼ା ବୋହି ଚାଲେ, ସତୁରି ଅଶୀ ବର୍ଷ ତଳର କାହାଣୀ ପରି ବହିଯାଏ । ସେ କହେ ଆଗ ତା ନିଜ କଥା ତା'ର କେବେ ବାପା ମା' ଥିଲେ, ସେ କେବେ ସୁଖରେ ବଢ଼ି ଖଟରେ ଶୋଉଥିଲା, ସେ କେବେ ଘରେ ବସି ଦୁଇ ଓଳି ପେଟପୂରେଇ ଖାଉଥିଲା, ଆଉ ଜଣକର ମଧୁର ବଚନ ଶୁଣି ଜୀବନର ସକଳ ଦୁଃଖ ଭୁଲିଯାଉଥିଲା । ସେ ଗଢ଼ିଥିଲା ଗୋଟେ ସ୍ୱପ୍ନ ରାଜ୍ୟ । ସେ ରାଜ୍ୟରେ ସିଏ ଥିଲା ରାଜା । ରାଣୀ କରି ଯାହାକୁ ଆଣିଥିଲା, ଜୀବନଟାକୁ ହସାଇ ନଚାଉଥିଲା । ତା'ର ଅଧର ତଳେ ସେ ଅମୃତ ପିଉଥିଲା; ତା'ର ଚାହାଣୀ ଭିତରେ ସେ ଜଗତ ଦେଖୁଥିଲା, ତା'ର ନିଶ୍ୱାସରେ ସେ ସୁବାସ ବାସୁଥିଲା ଓ ତା'ର ପାଦ ତଳେ ସେ ଫୁଲ ଫୁଟିବାର ଦେଖୁଥିଲା । କିନ୍ତୁ ସେ ସ୍ୱପ୍ନ ତା'ର ବେଶି ଦିନ ରହିଲା ନାହିଁ । ସ୍ୱପ୍ନମୟୀ ହସି ହସି ଚାଲିଗଲା । ଏ ସଂସାରର ସେ ପାଖରୁ ଏପାଖେ ଏ ଦୁଇଟି ବଳଦ ଗାଁରୁ ଷ୍ଟେସନକୁ ଓ ଷ୍ଟେସନରୁ ଗାଁକୁ ଦିନକେ ଦୁଇ ଥର ଯାଇ ତାକୁ ଆର ଜନ୍ମରେ ଭେଟିବାକୁ ଚେଷ୍ଟା କରୁଥିଲା ।

ଶଗଡ଼ ବୋହିଲାବେଳେ ଏ କଥା ସେ ସମସ୍ତଙ୍କୁ ଶୁଣାଇ କନ୍ଦାଇ ପକାଏ । ନିଜେ ଦୁଇ ଟୋପା ଲୁହ ନିଜର ଚିରା କାନିରେ ପୋଛିଦେଇ ବଳଦ ଉପରେ ହାତ ମାରି ପୁଣି କହେ ଆଉ ଗୋଟାଏ ଗଳ୍ପ । ଲୋକଙ୍କ ବାଟ ସରିଯାଏ, କିନ୍ତୁ ତାର ଗଳ୍ପ ସରେ ନାହିଁ । ସେ କହେ ତା ଶଗଡ଼ରେ ନ ବସିଚି କିଏ ? ବସି ନ ଥିଲେ

ବସି ନ ଥିବେ ଖଲ୍ଲିକୋଟର ରଜା । କିନ୍ତୁ ଦେୱାନ୍ କହ, ମ୍ୟାନେଜର କହ, ଓକିଲ କହ, ମହାଜନ କହ, ଏପରି କି ମହାତ୍ମାଙ୍କ ଭକ୍ତ ପର୍ଯ୍ୟନ୍ତ କହ, ସମସ୍ତେ ବସିଛନ୍ତି ତା ଶଗଡ଼ରେ ଏସବୁ କଥା କହିଲାବେଳେ ସେ ଉତ୍ସାହରେ କହେ ଯେ, ବେଳେବେଳେ ବଳଦ ଦୁଇଟା ଠିଆହୋଇଥିଲେ ମଧ୍ୟ ସେମାନଙ୍କୁ ଅଡ଼ାଏ ନାହିଁ । ଜାଣିପାରିଲେ କହେ, ଏ ପଶୁଗୁଡ଼ାକ ମଧ୍ୟ ଏକଥା ଶୁଣିବାକୁ ଜାଣନ୍ତିଛନ୍ତି ।

ମାଗୁଣିର ଶଗଡ଼ ଓ ବଳଦ ଖଲ୍ଲିକୋଟର ଗୋଟିଏ ବିରାଟ ଇତିହାସ ନ ହେଲେ ମଧ୍ୟ ସେ ଇତିହାସର କେତେଟା ପୃଷ୍ଠା । ସେ ଇତିହାସ କହେ, ଏ ଶଗଡ ରାଜ୍ୟର ସମସ୍ତଙ୍କି ଚଢ଼ାଇଛି । କେତେ ବାଳବିଧବା ଏହାରି ଉପରେ ବସି ଶାଶୁଘରୁ ବାପ ଘରକୁ ଫେରିଛନ୍ତି । କେତେ ସୁହାସିନୀ କୁଳବଧୂ ବାପଘରୁ ଶାଶୁଘରକୁ ମଧ୍ୟ ଯାଇଛନ୍ତି ! ଖଜଣା ଗଣ୍ଡାକ ଦେଇ ନପାରି ଯେଉଁଦିନ ମଣ୍ଡଳ ଗାଁର ଗଦା ଗୋଟିଲ ଜେଲ ଗଲା, ସେଇଦିନ ତା ଘରର ଗୃହିଣୀ ମୁଣ୍ଡା ଆଦି ଏଇ ଶଗଡ଼ରେ ବୁହାହୋଇ ଆସି ରଜାଘର କଚେରି ଦୁଆରେ ଜମା ହୋଇଥିଲା । ଯେଉଁଦିନ ବେହାଳିଆ ଗାଆଁର ମଧୁ ରଥେ ନରହତ୍ୟା ଅପରାଧରେ ଧରାହେଲେ, ସେଦିନ ସେ ଏଇ ଗାଡ଼ିରେ ବସି ଯାଇଥିଲେ । ଏ ଗାଡ଼ିରେ ବଡ଼ ଓକିଲ ଆସି ରଜାଘର ପକ୍ଷ ନେଇଛନ୍ତି । ଏଇ ଗାଡ଼ିରେ ଇଉରୋପୀୟ ହାତକଡ଼ା ପିନ୍ଧି କଚେରିକି ଯାଇଛନ୍ତି । ଏଇ ଗାଡ଼ି ସୁଖ ଦେଖିଛି, ଦୁଃଖ ଦେଖିଛି । ଲୁହ ବୋହି ଏଇ ଗାଡ଼ିର ଶୁଖିଲା ପାଳର ଗଦି ଓଦା ହୋଇଯାଇଛି, ହସରୋଳରେ ଏଇ ଗାଡ଼ି କେତେ କମ୍ପିଛି ।

ଏଇ ସବୁ କଥା କହି ମାଗୁଣି ଯେତେବେଳେ ଗାଡ଼ି ଚଳାଏ, ମନେହୁଏ ମାଗୁଣିର ଗୋଟାଏ ଜୀବନ୍ତ ଇତିହାସ । ଏପରି ଦଶ ପାଞ୍ଚଟା ଇତିହାସକୁ ଏକାଠି କଲେ ଓଡ଼ିଶାରେ ଗୋଟିଏ କୋଣାର୍କ ତିଆରି ହୁଅନ୍ତା ।

ହଠାତ୍ ମାଗୁଣି ଶୁଣିଲା, ତା ଗାଡ଼ିରେ ଆଉ ଲୋକେ ବସିବେ ନାହିଁ, କାରଣ ସିଂହଘର ଗୋଟାଏ ମୋଟର ବସ୍ ଆଣିଛନ୍ତି । ଶୁଣିଲା ମାତ୍ରେ ସେ ହସି ହସି ଆକାଶ ଫଟାଇଦେଲା ! କହିଲା—"ମୋଟର ବସ୍ ! ତା' କଣ ମୋ ଜାଲିଆ କଣ୍ଟରକୁ ଟପିଯିବ ? ଭଲ କରି ଆହାର ଦେଇ ଯେତେବେଳେ ହାତ ମାରିଦେବ, ଲୋକେ କ'ଣ ମୋ ଗାଡ଼ି ଛାଡ଼ି ସେ ଗାଡ଼ିକି ଯିବେ ?" ଏକଥା ଶୁଣି ସମସ୍ତେ ହସିଲେ ସତ, ମାତ୍ର ସେ ଖାତିର କଲା ନାହିଁ । ଦୁଇ ଚାରି ଦିନ ଗଲା । ଦେଖୁ ଦେଖୁ ଗଡ଼ରେ ମୋଟର ବସ୍ ପହଞ୍ଚିଲା । ଲୋକେ କହିଲେ, ଏଥର ମାଗୁଣିର ବ୍ୟବସାୟ ବୁଡ଼ିଲା । ଏକାବେଳକେ କୋଡ଼ିଏ ଜଣଙ୍କୁ ଧରି ଘଣ୍ଟାକେ ଚାଳିଶ ମାଇଲ ଯିବ । ମାଗୁଣି କି ତାକୁ ବଳିଯିବ ?

କଥା ସତ । ଦୈତ୍ୟଦାନବ ପରି ଗଡ଼ରେ ମୋଟର ବସ୍‌ଟାକୁ ଦେଖି ମାଗୁଣିର ମନରେ ଚମକା ପଶିଗଲା । ସେ କାନ୍ଦପାରିଲା ନାହିଁ ସତ, କିନ୍ତୁ କାନ୍ଦକାନ୍ଦ ହୋଇ ଯିବଲା, ସେଦିନ ଯାଇଥିଲା କୋଦଲା ସଭାକୁ । କିଏ କହୁଥିଲେ, କଳ ଜଗନ୍ନାଥଠୁ ହାତ-ଜଗନ୍ନାଥ ଭଲ । ତା' ହେଲେ ମୋଟର କଳଠୁ କ'ଣ ମୋ ଶଗଡ଼ ଭଲ ନୁହେଁ । ଏତେ ଲୋକ ସଭାରେ ବସି ଶୁଣୁଥିଲେ, ସେମାନେ କଣ ମୋ ଦୁଃଖ ବୁଝିବେ ନାହିଁ ? କର୍ମୀ ନ ବୁଝିଲେ ଯିବ ଗାନ୍ଧୀଙ୍କ ପାଖକୁ । ଦରିଦ୍ରର ସାଥୀ ସେ, ଗରିବଙ୍କ ବନ୍ଧୁ ସେ । ସେ କ'ଣ କହିବେ, ମାଗୁଣି ମରିଯାଉ ଆଉ ଏ ସିଂହେ ବଞ୍ଚନ୍ତୁ ?

ଷ୍ଟେସନରୁ ଗଡ଼କୁ ସିଂହଙ୍କ ବସ ଚାଲିଲା । ମାଗୁଣିର ଶଗଡ଼ ମଧ୍ୟ ଚାଲିଲା କିନ୍ତୁ ବସ ପୂର୍ଣ୍ଣ ଶଗଡ଼ ଖାଲି । ମାଗୁଣି ଯେତେ ଆଗରୁ ରାତି ଅଧରୁ ଉଠି ଷ୍ଟେସନରେ ଶଗଡ଼ ହାଜର କଲେ ମଧ୍ୟ ଲୋକେ ଗଲେ ବସ୍‌ରେ । ଯେତେ ନୂଆ ଅଖାର ଗଦି ପକାଇଲେ ମଧ୍ୟ ଲୋକେ ଧାଇଁଲେ ବାସ୍ ମୁହଁକୁ ଯେତେ ହାତ ଧରି ଡାକିଲେ ମଧ୍ୟ ଲୋକେ ଚଢ଼ିଲେ ବସ୍ ଆଡ଼କୁ । ଦିନେ ଗଲା, ଦୁଇଦିନ ଗଲା । ସେ ଦୁଇଓଳି ଖାଇକରି ଆସୁଥିଲା, ଓଳିଏ ଖାଇ ଆସିଲା । ସେ ଭାତ ଖାଇ ଆସୁଥିଲା, ତୋରାଣି ପିଇ ଆସିଲା । ସେ ଦୁଇଓଳିରେ ଅଠର ପଇ ଆସୁଥିଲା, ଏବେ ଠିକ ଓଳି ଚୁଲି ଲାଗିଲା ନାହିଁ । କାଳିଆ ବଳଦଙ୍କ ଗ୍ରୀବା ହାଡ଼ ଦିଶିଲା । ସେମାନଙ୍କୁ ଧରି ସେ ଯେତେବେଳେ କାନ୍ଦିଲା—କିଏ କହିଲା ପାଗଳ, କିଏ କହିଲା ବାୟା ।

ତା'ପରେ ଯେଉଁଦିନ ମାଗୁଣିର କୁଡ଼ିଆଦୁଆର ଖୋଲି ଗାଁ ଲୋକେ ତା ଶବ କାଢ଼ିଲେ, ଦେଖିଲେ ଛିଣ୍ଡା କନ୍ଥା ତଳେ ପାଞ୍ଚଣ ବାଡ଼ିଖଣ୍ଡିକ ଶୁଆଇଦେଇ ମାଗୁଣି ଆଖି ବୁଜି ଦେଇଛି । ମଶାଣିର ନିଆଁ ଜଳିଲା, ଆକାଶରେ ପକ୍ଷୀ ଉଡ଼ି ଧୂଆଁ ପାରି ହେଲେ । ପୃଥିବୀରେ ଦୁଇଲକ୍ଷ ଲୋକ ସେ ଖବର ପାଇ ଦୁଃଖରେ କହିଲେ –''ଆହା, ମାଗୁଣି ଚାଲିଗଲା !''

# ମାଂସର ବିଳାପ

● କାଳନ୍ଦୀ ଚରଣ ପାଣିଗ୍ରାହୀ

ଜଲି ଏବଂ ଡୋ'ଗ୍ର ଅବାଲ୍ୟ ପରମ ସାଥୀ । କ୍ଷଣେ ଏକ ଅପରକୁ ଛାଡ଼ି ରହିବାକୁ ସହଜରେ ରାଜି ହୁଅନ୍ତି ନାହିଁ । ଜଲି ଥରେ ଅସୁସ୍ଥ ହେଲା, ଡୋଗ୍ର ତାକୁ ଅହର୍ନିଶ ଜଗି ବସିଥାଏ । ସକଳ ତାଡ଼ନା ତାହା ନିକଟରେ ବ୍ୟର୍ଥ । ଅବଶେଷରେ ସେହିଠାରେ ତା'ର ପାନାହାର ଯୋଗାଇବା ଲାଗି ହୁକୁମ ହେଲା । ଡୋଗ୍ରର ପାଦ ଥରେ ଜଖମ ହେଲା । ଜଲି ଭଲ କରି ଜାଣେ ଡୋଗ୍ରର ବଳ ଅପରିସୀମ, କିନ୍ତୁ ବୁଝିପାରିଲା ନାହିଁ, କାହିଁକି ତାକୁ ଏତେ ଦିନ ଏକ ସ୍ଥାନରେ ବନ୍ଦୀ ହୋଇ ରହିବାକୁ ହୋଇଛି । ତା'ର ପାଦ ମୁଖରେ ସ୍ପର୍ଶ କରି ତା'ର ବ୍ୟଥା କେଉଁଠାରେ ଜାଣିବା ପାଇଁ ସଚେଷ୍ଟ ହେଲା ।

ଡୋଗ୍ର ଗୋଟିଏ ଇଂଲିଶ ଗ୍ରେ ହାଉଣ୍ଡ ଏବଂ ଜଲି ଗୋଟିଏ ଗଡ଼ଜାତ ଜଙ୍ଗଲର କୃଷ୍ଣସାର । ଡୋଗ୍ର ଆସିଛି ବିଖ୍ୟାତ ଲଣ୍ଡନ ନଗରୀରୁ, ଜଲିର ଜନ୍ମସ୍ଥାନ ଓଡ଼ିଶାର ନିଭୃତ ଅରଣ୍ୟାନୀ । ଡୋଗ୍ର ସମ୍ପୂର୍ଣ୍ଣ ମାଂସାଶୀ, ଜଲି ନିପଟ ଶାକାହାରୀ କିନ୍ତୁ ଏତ ଶ୍ରେଷ୍ଟଦନୁଁ ଦୁହିଙ୍କ ମଧ୍ୟରେ ସଦ୍ଭାବ ଜନ୍ମି ଯାଇଥିଲା ।

ଡୋଗ୍ରର ଅସୁସ୍ଥତା ନିବାରଣ ପାଇଁ ଜଲି ତାହାର ସର୍ବାଙ୍ଗ ଲେହନ କରି ଶୁଶ୍ରୂଷା ଦେଲେ । ଅବଶେଷରେ ଡୋଗ୍ର ଟିକିଏ ସୁସ୍ଥ ହୋଇ ପ୍ରଥମେ ଆସ୍ତେ ଆସ୍ତେ ଚାଲିବାକୁ ଆରମ୍ଭ କଲା । ତା'ପରେ ଯେତେବେଳେ ବସନ୍ତ ପୁଣି ଲେଉଟିଲା, ଫୁଲର ଗନ୍ଧ ଚହଟିଲା, ଦୁଇ ବନ୍ଧୁ ଦକ୍ଷିଣାଞ୍ଚମୂଳରେ ଇତସ୍ତତଃ ଧାଇଁ କ୍ରୀଡ଼ାକୌତୁକରେ ମଗ୍ନ ହେଲେ—ଯେପରି କି ଏହି ଅନନ୍ତର ସ୍ରୋତ ଯେଉଁ ଦିଗରୁ ଆସିଆସୁଛି, ସେହି ରହସ୍ୟମୟ ଦେଶଟାକୁ ଦୁହେଁ ମିଳି ଏକ ମୁହୂର୍ତ୍ତରେ ଆବିଷ୍କାର କରିନେବେ । ଦୁହିଙ୍କ ଦୌଡ଼ିବାର ଭଙ୍ଗୀରେ ବିଶେଷ ପାର୍ଥକ୍ୟ ଓ ସୌନ୍ଦର୍ଯ୍ୟ କଳା ନିହିତ ଅଛି । ଡୋଗ୍ର ଯେତେବେଳେ ଦୌଡ଼େ, ସେତେବେଳେ ଗୋଟିଏ ଲମ୍ବମାନ କ୍ଷୀଣପୃଷ୍ଠ ଭୂମିରେ ମିଶିଗଲା ପରି ମନେହୁଏ । ସେତେବେଳେ ତାର ଚକ୍ଷୁ, କର୍ଣ୍ଣ, ପାଦ, ମୁଖ ଇତ୍ୟାଦି ଚିହ୍ନିବାର ଉପାୟ ନାହିଁ, କିନ୍ତୁ ଜଲିର ଦୌଡ଼ରେ ଭଙ୍ଗିମା ଭିନ୍ନ ଧରଣର । ସେ ଯେପରି ପ୍ୟାଲେସ ଡାନ୍ସ ! ଗୋଡ଼ ଯେପରି ତା'ର ତଳେ ଲାଗୁ ନାହିଁ, କେବଳ ଶୂନ୍ୟେ ଶୂନ୍ୟେ ନାଚି ନାଚି ଯାଉଛି ।

ପଶୁ ଦୁଇଟି ଜମିଦାର ବାବୁଙ୍କର ବଡ଼ ପ୍ରିୟ ଥିଲେ । ଟୋମ୍ ତ ବିଲାତ ଉତ୍ପନ୍ନ ବୋଲି ତା'ର ଇଂରାଜୀ ନାମ ନିଆଯାଇଥିଲା; ଜଲିକୁ ତା'ର ଅତ୍ୟନ୍ତ ପ୍ରିୟ ଦେଖି ତାକୁ ମଧ୍ୟ ସେହି ଢଙ୍ଗରେ ଅନ୍ୟ ଗୋଟିଏ ନାମରେ ଅଭିହିତ କରାଯାଇଥିଲା । କର୍ମକ୍ଲାନ୍ତ ଦିବସ ପରେ ଜମିଦାରବାବୁ ଯେତେବେଳେ ଉଆସର ସମ୍ମୁଖସ୍ଥ ପ୍ରକାଣ୍ଡ ପଡ଼ିଆରେ ସ୍ୱାସ୍ଥ୍ୟଭ୍ରମଣ ଉଦ୍ଦେଶ୍ୟରେ ବାହାରନ୍ତି, ସେତେବେଳେ ଏ ଦୁଇଟି ପଶୁ ତାଙ୍କର ସହଚର ହୋଇ ଚାଲିବାରେ ଏବଂ ତାଙ୍କ ସମ୍ମୁଖରେ କ୍ରୀଡ଼ା କୌତୁକ କରିବା ଦ୍ୱାରା, ତାଙ୍କ ଶ୍ରାନ୍ତ ଅନ୍ତରରେ ଯେ ଆନନ୍ଦ ସଞ୍ଚାର କରନ୍ତି ତାହାର ମୂଲ୍ୟ ସାମାନ୍ୟ ନୁହେଁ । ତାହା ନ ହେଲେ ଶିକାରସ୍ଥଳୀରେ ଟୋମର କିଛି ଆବଶ୍ୟକତା ଅଛି, ଜଲି ତ ସମ୍ପୂର୍ଣ୍ଣ ଅନାବଶ୍ୟକ । ତଥାପି ଜମିଦାର ବାବୁଙ୍କର କର୍ମପ୍ରବାହ ମଧ୍ୟରେ ଜଲିର ଟିକିଏ ସ୍ଥାନ ଅଛି । ସେହି ଆନନ୍ଦଟିକକର କାରଣ ସେ ।

ଜମିଦାର ବାବୁ ଗସ୍ତରେ ଯେତେବେଳେ ବାହାରନ୍ତି, ଜଲି ତାଙ୍କ ହାତ ଚାଟି ଚାଟି ଗୋଡ଼ରେ ଘଷି ହୋଇ ଚାଲେ । ଟୋମ୍ କେତେବେଳେ ପଛରେ ରହିଗଲେ ଛୁଟିଆସି ତାଙ୍କ ସମ୍ମୁଖରେ ନମସ୍କାର ଛଳରେ କର ଯୋଡ଼ ହୋଇ ବସିପଡ଼ି ଲାଙ୍ଗୁଳ ହଲାଏ । କେତେବେଳେ ତାଙ୍କ ଦୁଇ ପାଦ ମଧ୍ୟରେ ପ୍ରବେଶ କରି ଗତି ଶିଥିଳ କରାଏ । ଅନ୍ୟ କୌଣସି କୁକୁର ଯେବେ ଆସି ଜଲି ଉପରେ ଲୋଲୁପ ଦୃଷ୍ଟି ପକାଏ, ଜଲି ସନ୍ତ୍ରସ୍ତ ହୋଇ ବାବୁଙ୍କ ଦୁଇ ପାଦ ମଧ୍ୟରେ ଠେଲି ଠେଲି ପ୍ରବେଶ କରେ । ଟୋମ୍ ଜାଣିପାରି ସଙ୍ଗେ ସଙ୍ଗେ ଯୁଦ୍ଧପାଇଁ ପ୍ରସ୍ତୁତ ହୋଇ ଦେଖାଦେବାମାତ୍ରେ ତା'ର ସ୍ୱଜାତିମାନେ ପୃଷ୍ଠପ୍ରଦର୍ଶନ କରି ବିନୀତ ଭାବରେ ଅପସାରିତ ହୁଅନ୍ତି । କାରଣ ଟୋମର ବଳବୀର୍ଯ୍ୟ ତା'ର ପଡ଼ୋଶୀମାନଙ୍କୁ ଅଜ୍ଞାତ ନ ଥିଲା ।

ଜମିଦାର ବାବୁଙ୍କର ଶିକ୍ଷା ସ୍ୱପୁରଠାରେ ହିଁ ସମାପ୍ତ ହୋଇଅଛି । ବେଶ୍ ଆଧୁନିକ ଧରଣର ଲୋକ, ମିଷ୍ଟାଳାପ, ଶିଷ୍ଟାଚାର ଇତ୍ୟାଦି ଗୁଣର ଅଭାବ ନ ଥିଲା । ଦେଶୀ ଲୋକଙ୍କ ପାଖରେ କ୍ଷଣ୍ଡୀ ବୃଦବପନା ଖାଣ୍ଟି ଦେଶୀ ଓ ବଳଅଙ୍କ ପାଖରେ ପୂରା ସାହେବ । ଅବସର ସମୟରେ ବଡ଼ ବଡ଼ ସାହେବସୁ । ଶିକାର ଉଦ୍ଦେଶ୍ୟରେ ଜମିଦାର ଭବନରେ ଆତିଥ୍ୟ ଗ୍ରହଣ କରିଥାନ୍ତି । ସେମାନଙ୍କ ଉଦ୍ଦେଶ୍ୟରେ ମଧ୍ୟ ବେଶ୍ ଆୟୋଜନରେ ଅତିଥିଶାଳା ନିର୍ମାଣ କରାଯାଇଅଛି । କେବଳ ଜଲି ଓ ଟୋମ୍ ତାଙ୍କର ପୋଷା ନ ଥିଲେ । ଏହାଛଡ଼ା କେତେକ ଜାତିର ପକ୍ଷୀ, ମର୍କଟ, ଭଲ୍ଲୁକ, ମତ୍ସ୍ୟ ଇତ୍ୟାଦି କେତେ ଜମିଦାର ବାବୁଙ୍କ ଯତ୍ନରେ ପରିପୋଷିତ ହେଉଥିଲେ । କହିବାକୁ ଗଲେ ଜମିଦାର-ଭବନରେ ଗୋଟିଏ ଶ୍ରେଷ୍ଠ ଧରଣର ଚିଡ଼ିଆଖାନା ଥିଲା ।

କଲୁ ଡୋଗ ଓ ଜଲ ତାଙ୍କର ପାର୍ଶ୍ୱଚର । ବିଶେଷତଃ ତାଙ୍କର ଅତି ସ୍ନେହର ଏକମାତ୍ର କନ୍ୟାଟି ଜଲ ଓ ଡୋଗର ଅନ୍ୟତମ ସଙ୍ଗୀ ଥିଲା । ତାର ଅଧିକାଂଶ ସମୟ ସେ ବୁଢ଼ିଙ୍କୁ ନେଇଥାଏ । ବଗିଚାରେ ଧାଙ୍ଗର ତତ୍ତ୍ୱାବଧାନରେ ସେ ଯେତେବେଳେ କଅଁଳ ଘାସ ଛୁଣ୍ଡାଏ, ଜଲ ଜାଣିପାରି ତା' ମୁହଁ ପାଖରେ ନିଜ ମୁହଁଟି ନେଇ ରଖେ । ଡୋଗ ଦୌଡ଼ଆସି ତା'ର ଏହି ଶ୍ରେଷ୍ଠ ଖାମିଦାଣୀ ପାଖରେ କେତେ ଖେଳ କୌତୁକର ଅଭିନୟ କରେ । ଖାମିଦାଣୀ 'ରୁ କାଇବୁ' 'ରୁ କାଇବୁ' ତା ମୁହଁରେ ଘାସ ଗୁଞ୍ଜି ଦିଅନ୍ତି । ସେ ଅମାନ୍ୟ ନ କରି ମୁଖରେ ତାହା ଧରି ସ୍ୱୀୟ ବାଧ୍ୟତା ଜ୍ଞାପନ କରେ । ବାରନ୍ଦା-ଇଜି-ଚେୟାରରେ ବସି ଏସବୁ ନିରୀକ୍ଷଣ କରି ବାବୁଙ୍କ ଚିତ୍ତ ଉତ୍‌ଫୁଲ୍ଲ ହୋଇଉଠେ ।

ଜମିଦାର ବାବୁ ସାହେବମାନଙ୍କ ସହିତ ଯେତେ ମିଳାମିଶା କରନ୍ତୁ, ଦେଶୀ ଲୋକମାନଙ୍କ ପ୍ରତି ସେ ତାଙ୍କର ଅବଜ୍ଞା ଅଥବା ଘୃଣା ଥିଲା, ଏହା ବୋଲାଯାଇ ନ ପାରେ । ଦେଶର କୌଣସି ପଦସ୍ଥ ବ୍ୟକ୍ତି ତାଙ୍କର ଦ୍ୱାରସ୍ଥ ହେଲେ ତାଙ୍କ ସମ୍ମାନ ଅଭ୍ୟର୍ଥନାରେ କୌଣସି ତ୍ରୁଟି ହେଉ ନ ଥିଲା । ପ୍ରଜାମାନଙ୍କ ମଧ୍ୟରେ ମଧ୍ୟ ଶିକ୍ଷିତ ସମ୍ଭ୍ରାନ୍ତ ବ୍ୟକ୍ତିମାନଙ୍କ ପ୍ରତି ଯଥାଯୋଗ୍ୟ ସମ୍ମାନ ଦେଖାଯାଉଥିଲା ତଥାପି ଲୋକମତ ତାଙ୍କ ଗତିବିଧିର ଅନୁକୂଳରେ ନ ଥିଲା । ବୁଢ଼ା ବୁଢ଼ା ଲୋକେ ତାଙ୍କୁ ଭ୍ରଷ୍ଟ, ବିଧର୍ମାଗ୍ରସ୍ତ କହୁଥିଲେ । ଆଉ କେହି କେହି ବହୁ ବ୍ୟବସାୟୀ ପ୍ରଜାପୀଡ଼କ କହୁଥିଲେ । ଦେଶଚକ୍ଷୁରେ ତାଙ୍କର ପ୍ରଧାନ ଦୋଷ, ସେ ବିଦେଶୀ-ମାନଙ୍କ ସହିତ ମିଶିଲେ ଏବଂ ସେହିମାନଙ୍କ ଆଚାର ଗ୍ରହଣ କଲେ । ଯଥାର୍ଥରେ ତାଙ୍କର ଆହାର ପରିଚ୍ଛେଦରେ ବିଜାତୀୟ ଭାବ ଅନେକ ପରିମାଣରେ ଲକ୍ଷିତ ହେଉଥିଲା । ସେ ସବୁରେ ଯେତିକି ସଂଯମ ଆବଶ୍ୟକ, ସେ ତା'ର ସମ୍ପୂର୍ଣ୍ଣ ଅବହେଳା କରୁଥିଲେ ।

ଏଥର ଶୀତ ଛୁଟିରେ ପୋଲିସ ବିଭାଗର ଡି. ଆଇ. ଜି. ସାହେବ ଶିକାର ଉଦ୍ଦେଶ୍ୟରେ ଜମିଦାର ଭବନରେ ଆତିଥ୍ୟ ଗ୍ରହଣ କରିବେ ବୋଲି ଲେଖି ପଠାଇଛନ୍ତି । ତାଙ୍କ ସହିତ ତାଙ୍କର ସ୍ତ୍ରୀ ଓ କନ୍ୟା ଆସିବେ ଡି. ଆଇ. ଜି. ସାହେବଙ୍କ ସହିତ ଜମିଦାର ବାବୁଙ୍କର ଘନିଷ୍ଠତା ବହୁଦିନର । ଏଥର ପୁଣି ସଙ୍ଗରେ ସ୍ତ୍ରୀ କନ୍ୟା ଆସୁଛନ୍ତି । ବହୁଦିନ ଆଗରୁ ଅତିଥିଶାଳା ପରିଷ୍କୃତ ହୋଇ ସଜାସଜି ଲାଗିଛି ଏବଂ ଯେଉଁ ସ୍ଥାନରେ ହରିଣ ଓ ପକ୍ଷୀ ପ୍ରଭୃତି ଶିକାର କରିବାର କଥା, ସେ ସ୍ଥାନରେ ତମ୍ବୁ ପ୍ରଭୃତିର ଆୟୋଜନ ଚାଲିଛି । ଆବଶ୍ୟକ ଜିନିଷ କିଣିବା ଲାଗି କଟକକୁ ଲୋକ ପଠାଯାଉଅଛି । ଚାକର, ବେହେରା ଓ ଅମଲା ପ୍ରଭୃତି ବ୍ୟତିବ୍ୟସ୍ତ ହୋଇ ଲାଗିପଡ଼ିଛନ୍ତି । ଦିନୁଅର ପରି ଏଥର କାହାରିଙ୍କୁ ମନେନାହିଁ ତର ନାହିଁ । ସବୁଥର ପରି ଏଥର ମଧ୍ୟ ଜମିଦାର ବାବୁଙ୍କ ପଶ୍ଚାତ୍‌ରେ ଗାଳି-ବର୍ଷଣ କରୁଛନ୍ତି ।

ସାହେବଙ୍କ ଆସିବା ସମୟକୁ ତାଙ୍କୁ ବାଟରୁ ସଙ୍ଗେଇ ଆଣିବା ଲାଗି ଜମିଦାର ବାବୁ ଖଣ୍ଡେଦୂର ମଟରରେ ଗଲେ । ନିର୍ଦ୍ଦିଷ୍ଟ ସମୟରେ ସାହେବ ପହଞ୍ଚିଲେ ତାଙ୍କର ସ୍ତ୍ରୀ କନ୍ୟାମାନଙ୍କ ସହିତ ଯୋଗ ଦେଇ ଜମିଦାର ବାବୁଙ୍କ ମନପ୍ରାଣ ଆପ୍ଲୁତ ହୋଇଉଠିଲା । ଜମିଦାର ଭବନରେ ମହା ଚାଞ୍ଚଲ୍ୟ; କାହାର ଦଣ୍ଡେ ସ୍ଥିରହୋଇ ରହିବାର ସମୟ ନାହିଁ । ସମସ୍ତେ ଦୌଡ଼ ଧାପଡ଼ କରୁଛନ୍ତି । ଅତିଥିମାନଙ୍କ ସହିତ ଠିକ୍ କରାଗଲା, ଆଜି ଅତିଥିଶାଳାରେ ରହି ପରଦିନ ପ୍ରାତଃ-ଭୋଜନ ପରେ ଶିକାରସ୍ଥଳୀକୁ ଯାତ୍ରା କରିବାକୁ ପଡ଼ିବ ।

ଶିକାରସ୍ଥଳୀ ଜମିଦାର ଭବନରୁ ବାର ଚୌଦ ମାଇଲ ରାସ୍ତା, ନିପଟ ଜଙ୍ଗଲ ମଧ୍ୟରେ, ଘର ଗାଁ ପାଖରେ ନାହିଁ । ଚାକର, ଖାନସମା ବେଠିଆ ପ୍ରଭୃତି ଆଗରୁ ସବୁ ଜିନିଷପତ୍ର ନେଇ ଚାଲିଲେ । ପଛରେ ସାହେବ ପରିବାର, ଜମିଦାର ବାବୁ ସାହେବଙ୍କ ଦୁଇଟା ଶିକାରୀ କୁକୁର ଏବଂ ଜମିଦାର ବାବୁଙ୍କର ଡୋରା ଓ ଜଲି ମଟରରେ ଆରୋହଣ କରି ଚାଲିଲେ । ଜଲିର ପିତା ଅନାବଶ୍ୟକ ହେଲେହେଁ ଡୋରା ତାକୁ ଛାଡ଼ି କୌଣସି ସ୍ଥାନରେ ରହିବ ନାହିଁ । ଯେଉଁ ଦେଶକୁ ନିଆଯାଉ, ସୁଯୋଗ ପାଇଲେ ଆସି ତା' ନିକଟରେ ହାଜର ହେବ । ସୁତରାଂ ଜଲିକୁ ମଧ୍ୟ ସଙ୍ଗରେ ନେବାକୁ ହେଲା । ସେଥିପାଇଁ ଅବଶ୍ୟ ଶ୍ରେଷ୍ଠ ଜମିଦାରଣୀଙ୍କର ଅନୁମତି ନିଆଯାଇଛି । ତାଙ୍କର ହୁକୁମ ହୋଇଛି, ଦୁଇ ଦିନରୁ ଅଧିକ କାଳ ଡୋରା ଓ ଜଲିକୁ ଯେପରି ଅଟକା ନ ଯାଏ ।

କାଲି ମେରି କ୍ରିଷ୍ଟମାସ୍'ର ଆନନ୍ଦ ଉତ୍ସାହରେ ଶିକାରସ୍ଥଳୀରେ ରହିବାର ଆଜି ପାଞ୍ଚଦିନ ହୋଇଗଲା । ସେହି ଜଙ୍ଗଲ ଜାଗାଟାରେ ସାହେବଙ୍କର ମନୋମତ ସବୁ ଜିନିଷ ଯୋଗାଯାଉଛି । ତାଙ୍କର ଅସୁବିଧା ହେବା ଦୂରେ ଥାଉ, ସହରର କୋଳାହଳକ୍ଳାନ୍ତ ଜୀବନରେ ଏହି ନିର୍ଜନ ବନବାସଦ୍ୱାରା ସେମାନଙ୍କର ଆନନ୍ଦ ଜନ୍ମିଛି । ସୁତରାଂ ଦୁଇ ଦିନପାଇଁ ଆସି ପାଞ୍ଚ ଦିନ ହୋଇଗଲା, ସାହେବଙ୍କର ଫେରିବାପାଇଁ କୌଣସି ଉଦ୍‌ବେଗ ନାହିଁ । କିନ୍ତୁ ଆଜି ସବୁ ଜିନିଷପତ୍ର ଶେଷ ହୋଇଆସିଅଛି । କାଲି ପ୍ରାତଃରୁ ଫେରିବା କଥା ।

ମଧ୍ୟାହ୍ନଭୋଜନ କରି ସାହେବଙ୍କର ସହ ଜମିଦାର ବାବୁ ଶିକାର ଉଦ୍ଦେଶ୍ୟରେ ବାହାରିଲେ । ଗତ ଚାରି ଦିନ ସାହେବଙ୍କର ସ୍ତ୍ରୀ କନ୍ୟାମାନେ ଖେଳକୌତୁକ, ନୃତ୍ୟଗୀତ ଅକୁଣ୍ଠ ଉପଭୋଗ କରିଯାଇଛନ୍ତି । ଆଜି ଆଉ ସେମାନେ ଶିକାରର ସହଯାତ୍ରୀ ହୋଇପାରିଲେ ନାହିଁ । ନସିବ ଚାକର ବେଠିଆ-ଗୁଡ଼ିକ ଗୋଟିଏ ବରାଡ଼ପିଲା ନ ମାରି ମଧ୍ୟ କେବଳ ଟିକିଏ ଶିକାରରେ ସାହାଯ୍ୟ

କରିବାରେ ଧକେଇ ପଡ଼ୁଛନ୍ତି । ତଥାପି ସେମାନଙ୍କ ମଧ୍ୟରୁ ଦୁଇ ତିନି ଜଣଙ୍କୁ ଫିବାକୁ ହେଲା । ପକ୍ଷୀ ମାରିବାରେ ଥରେ ଦୁଇ ଥର ଲକ୍ଷ୍ୟ ଭ୍ରଷ୍ଟ ହେବାରୁ ଆଉ ମାରିବା ଅସମ୍ଭବ ହୋଇପଡ଼ିଲା । ପକ୍ଷୀମାନଙ୍କୁ ପୁନଶ୍ଚ ଆସି ବସିବାକୁ ଅବସର ଦେବା ଉଦ୍ଦେଶ୍ୟରେ ଏବଂ ସେ ସମୟଟା ହରିଣ ଦ୍ରକ୍ଷଢ ଅନୁସନ୍ଧାନ କରିବା ଲାଗି ଶିକାରୀ ଦ୍ୱୟ ନିକଟବର୍ତ୍ତୀ ଜଙ୍ଗଲମଧ୍ୟକୁ ବାହାରିଲେ । ନାନା ଦିଗରେ ଭ୍ରମି କୌଣସିଠାରେ କିଛି ସନ୍ଧାନ କରିପାରିଲେ ନାହିଁ । ସୁନ୍ଦର ଢନଟାଙ୍କୁ ହରିଣ ଦେଖିବାକୁ ଜଙ୍ଗଲକୁ ପଠ ଗଲା । ସେମାନେ ଯେଉଁଠାରେ ବସି ପିକା ଟାଣିଲେ କି ଗୁଣ୍ଡିପକ ମକଚ ଖୁସିଗପ କଲେ, ତା ଦେଖିବାର ତ ଉପାୟ ନାହିଁ । ଶିକାରୀ ଦୁଇ ଜଣ ନିଃଶବ୍ଦ ପଦକ୍ଷେପରେ ଏ ଜଙ୍ଗଲ, ସେ ଜଙ୍ଗଲ ଖୋଜିବାକୁ ଲାଗିଲେ । ତମ୍ବୁ ନିକଟରୁ ତିନି ଚାରି ମାଇଲ ଯାଇ ପଡ଼ିଛନ୍ତି ବୋଲି କାହାର ଭ୍ରୂକ୍ଷେପ ନାହିଁ ।

ସେତେବେଳକୁ ବେଳ ରତରତ ହୋଇ ଆସୁଛି । ନିକଟବର୍ତ୍ତୀ ପାହାଡ଼ ଉହାଡ଼ରେ ସୂର୍ଯ୍ୟ ଲୁଚିଯାଉଛି; କିନ୍ତୁ ତା'ର ରକ୍ତିମ ଆଭା ପଶ୍ଚିମାକାଶରେ ଖେଳେଇ ପଡ଼ୁଛି । ଶିକାରୀଦ୍ୱୟ ଜୀବଦେହର ଲାଲ ରକ୍ତ ଦେଖିବାର ଅଭିଳାଷୀ, ଏ ଦିଗରେ ନଜର ନାହିଁ । ତେଣେ କିନ୍ତୁ ପୂର୍ବଦିଗ ମେଘାଚ୍ଛନ୍ନ କରି ଅନ୍ଧାର ଘୋଟି ଆସିଲାଣି । ପୃଥିବୀ ଉପରେ ଏମାନଙ୍କର ଦୃଷ୍ଟି, ଆକାଶ ସହିତ ସମ୍ପର୍କ କ'ଣ ? ଆସନ୍ନ ବୃଷ୍ଟିର ଶୀତ ପବନ ଯେତେବେଳେ ଦେହରେ ଲାଗିଲା, ଶିକାରୀଦ୍ୱୟ ଫେରି ବୁଝିଲେ ଅକସ୍ମାତ ବୃଷ୍ଟିର ଆୟୋଜନ । ତମ୍ବୁ ନିକଟରୁ ସେମାନେ ତିନି ଚାରି ମାଇଲ ଦୂରବର୍ତ୍ତୀ ହୋଇପଡ଼ିଛନ୍ତି । ସୁତରାଂ ବର୍ଷା ପୂର୍ବରୁ ତମ୍ବୁ ଧରିବା ଅସମ୍ଭବ । ଅଗତ୍ୟା ବନ୍ଧୁକ-ସ୍କନ୍ଧ ହୋଇ ଦୁଇ ବନ୍ଧୁ ମିଲିଟାରୀ ଡବଲ ମାର୍ଚ୍ଚ ଆରମ୍ଭ କରିଦେଲେ । କିନ୍ତୁ ଠିକ୍ ସେହି ସମୟରେ ହୁ-ହୁ ଆନନ୍ଦଧ୍ୱନି କରି ମେଘ ସେମାନଙ୍କୁ ଆକ୍ରମଣ କଲା । କୌଣସି ଦିଗରେ ନିକଟରେ ଆଶ୍ରୟ ନାହିଁ । ଚତୁର୍ଦ୍ଦିଗ ଅନ୍ଧକାରାଚ୍ଛନ୍ନ, ଘୂର୍ଣ୍ଣିବାୟୁ ସନ୍ନିକଟ ଅରଣ୍ୟାନୀ ମଧ୍ୟରେ ମହାକ୍ରନ୍ଦନରୋଳ ଉପୁଜାଇଦେଲା । ଅତି କଷ୍ଟରେ ସନ୍ତର୍ପଣରେ ଦୁଇ ଜଣ ବାଟ ଖୋଜି ଚାଲିଲେ । ପରିଚ୍ଛଦ ସବୁ ଓଦା ହୋଇ ଝୁବ୍ ଝାବ୍ ହୋଇଗଲା । ଦୀର୍ଘ ନିଶ୍ୱାସ ଛାଡ଼ି ତମ୍ବୁରେ ପହଞ୍ଚିଲା ବେଳକୁ ରାତି ଆଠଟା ।

ନୈଶ୍ୟଭୋଜନର କୌଣସି ବନ୍ଦୋବସ୍ତ ନାହିଁ, ତାହା ହିଁ ବର୍ତ୍ତମାନ ବିଶେଷ ଭାବନାର ବିଷୟ ହୋଇପଡ଼ିଲା । ଶିକାର ତ କିଛି ହେଲା ନାହିଁ । ଆଉ ମଧ୍ୟ ପରଦିନ ପ୍ରାତଃରୁ ଏ ସ୍ଥାନ ଛାଡ଼ିବାର ବିଚାର ଥିବାରୁ ଏବଂ ଶିକାର ପାଇବା ବିଷୟରେ କୌଣସି ସନ୍ଦେହ ନ ଥିବାରୁ ପୂର୍ବରୁ ନୈଶ୍ୟଭୋଜନ ପାଇଁ କୌଣସି ଆୟୋଜନ କରାଯାଇ ନ ଥିଲା । ବର୍ତ୍ତମାନ ଆଉ ଉପାୟ ନାହିଁ । ଜମିଦାରଙ୍କ

ଉଆସ ଏଠାରୁ ବାର ଚୌଦ ମାଇଲ ଦୂର । ଏ ବର୍ଷାରେ ପୁଣି ସେ ସ୍ଥାନକୁ ଯାଇ ଘୋଡ଼ା ଉପରେ ଖାଦ୍ୟଦ୍ରବ୍ୟ ଆଣିବା କି ସମ୍ଭବ ! ସହରର ରାସ୍ତା ତ ବର୍ଷା ଜଳରେ ଅଗମ୍ୟ ହୋଇପଡ଼ିଥିବ । ନିକଟବର୍ତ୍ତୀ ସେପରି ସ୍ଥାନ ନାହିଁ, ଯେଉଁଠାରେ ସାହେବ ଓ ଜମିଦାରବାବୁଙ୍କ ଆହାରୋପଯୋଗୀ କିଛି ହେଲେ ମିଳିବ । ମାଂସ ନ ହେଲେ ସେ ଅନାହାର ! ଆଜି ପୁଣି ଏତେ ବିପଦ ସହ୍ୟ କରାଯାଉଛି । ସମସ୍ତଙ୍କର ଭାବନା ପଡ଼ିଗଲା । ଜମିଦାର ବାବୁଙ୍କ ଉପରେ ସମ୍ପୂର୍ଣ୍ଣ ନିର୍ଭର କଲେ ହେଁ ସାହେବଙ୍କର ମଧ୍ୟ ଭାବନା ପଡ଼ିଗଲା । କାରଣ ଶିକାର କରିବାକୁ ଯିବାବେଳେ ଜମିଦାର ବାବୁ ଲୋକ ପଠାଇ ମାଂସର ଆୟୋଜନ କରିବାକୁ ଯାଉଥିଲେ । ସାହେବ କିନ୍ତୁ ଶିକାର ନିଶ୍ଚୟ ମିଳିବ କହି ତାଙ୍କୁ ସେସବୁ ଆୟୋଜନରୁ ନିବୃତ୍ତ କରାଇଥିଲେ । କରାଯାଏ କ'ଣ ? ଜମିଦର ବାବୁ ଅଯଥା ବେଠିଆ ଚାକରଗୁଡ଼ାଙ୍କ ଉପରେ ରୁଷ୍ଟ ହେଲେ ।

ଏସବୁ ଦେଖି ସାହେବ ଟିକିଏ ମୁରୁକିହସା ଦେଇ କହିଲେ, Well let me devise some means of the dinner' (ଆଚ୍ଛା ରାତି ଭୋଜନର ବ୍ୟବସ୍ଥା କରାଯାଉ ।)

ଜମିଦାର ବାବୁ ସେହି ହାସ୍ୟରେ ଉତ୍ତର ହାସ୍ୟରେ ପ୍ରଦାନ କରି କହିଲେ, 'Well'

ସାହେବ କହିଲେ, 'Won't you mind spare your heart ? It will make a sumptuous feart and you can have a lot of them from the jungles. Don't you like the idea ? (ଆପଣଙ୍କର ହରିଣଟିକୁ ଦେବାକୁ କିଛି ଆପତ୍ତି ଅଛି କି ? ଏହା ବେଶ୍ ସୁନ୍ଦର ଆହାର ହେବ ଏବଂ ଜଙ୍ଗଲରୁ ଆପଣ ସେଥିରୁ ଅନେକ ପାଇପାରିବେ । କିପରି, କଥା ଭଲ ଲାଗୁନାହିଁ ?

ଜମିଦାର ବାବୁ କ'ଣ ଭାବୁଥିଲେ । ସାହେବଙ୍କ ବାକ୍ୟ ଶେଷ ହେବାର ଦେଖି ହଠାତ୍ ଚମକିପଡ଼ି ଉତ୍ତର କଲେ, Oh yes, it's fine idea' (ଠିକ୍ କହୁଛନ୍ତି ।) ଜମିଦାର ବାବୁ ସମ୍ଭ୍ରାନ୍ତ ବନ୍ଧୁ ଓ ଅତିଥିଙ୍କ କଥାରେ ଅସମ୍ମତ ହୋଇପାରିଲେ ନାହିଁ, କିନ୍ତୁ ଜଲି କଥା ଶୁଣି ତାଙ୍କ ହୃଦସ୍ପନ୍ଦନ କିପରି ଦପଦପ ହୋଇ ପଡ଼ିଗଲା । ଜଲି ପ୍ରତି ତାଙ୍କର ଟିକିଏ ବିଶେଷ ମମତା ଜନ୍ମିବାର କାରଣ ଅଛି । ଦିନେ ଅନ୍ୟ ଏକ ବିଦେଶୀୟ ବନ୍ଧୁଙ୍କ ସମକ୍ଷରେ ନିଜ ଶିକାର କୌଶଳର ତାରିଫ୍

ଦେଖାଇବାକୁ ଯାଇ ସେ ଜଲିକୁ ପାଇଥିଲେ । ସେତେବେଳେ ତା'ର ମା ତାକୁ ସ୍ତନ୍ୟପାନ କରାଉଥିଲା । ଜମିଦାର ବାବୁଙ୍କ ଗୁଳି ବସି ମାଆଟି ଢଳିପଡ଼ିଲା, କିନ୍ତୁ ନିର୍ବୋଧ ଶିଶୁ ନିର୍ଭୟରେ ଠିଆ ହୋଇ ରହିଲା । ଜମିଦାର ବାବୁଙ୍କ ଲୋକ ଯେତେବେଳେ ତାକୁ ଧରିବାକୁ ଗଲା, ମା ନିକଟରେ ଅଛି ବୋଲି ସେ ନିଃଶଙ୍କ ଭାବରେ ଦଣ୍ଡାୟମାନ ରହିଲା ବିଦେଶୀୟ ବନ୍ଧୁଙ୍କଠାରୁ ଏହି ଶିକାର କୌଶଳରେ ଯଥେଷ୍ଟ ବାହାବା ପାଇଲେ ହେଁ ଏ କ୍ଷୁଦ୍ର ଶିଶୁର ନିର୍ବୋଧ ଆଖି ଦୁଓଟିକ ଦୃଷ୍ଟି ତାର ମାତୃହନ୍ତା ଜମିଦାର ବାବୁଙ୍କର ତା' ପ୍ରତି ସେହିଦିନୁ ଗୋଟାଏ ଜପର ବାତ୍ସଲ୍ୟ ଓ ଶ୍ରଦ୍ଧା ଜନ୍ମି ଯାଇଥିଲା ।

ଜଲିକୁ ହତ୍ୟା କରି ପରେ ତା'ର ମାଂସ ଭକ୍ଷଣ କରିବାକୁ ହେବ, ଏ କଥା ସେ କେବେ କଳ୍ପନା କରିପାରି ନ ଥିଲେ । ବର୍ତ୍ତମାନ ସେହି ପରାମର୍ଶ ଶୁଣି ଜମିଦାର ବାବୁଙ୍କ ଶିକାରୀ ଅନ୍ତର ମଧ୍ୟ ଟିକିଏ ଦବିଗଲା । ତାହା ବୋଲି ଏତେ ବଡ଼ ସମ୍ଭ୍ରାନ୍ତ ଅତିଥିଙ୍କ କଥା କ'ଣ ନାହିଁକରି ଦିଆଯାଇପାରେ ? ଜମିଦାର ବାବୁଙ୍କର ସମ୍ମତି ପାଇ ସାହେବ ମହାନନ୍ଦରେ ନିଜେ କାଟିବାକୁ ଉଦ୍ୟତ ହେଲେ । ନିଜ ହାତରେ କିଛି ହେଲେ ଶିକାର ନକଲେ ସେଦିନ ତାଙ୍କ ମନଟା ଭଲ ରହେ ନାହିଁ । ଯୁଦ୍ଧରେ ବହୁତ ଲୋକଙ୍କର ପ୍ରାଣ କ୍ଷୟ କରିଥିଲେ ବୋଲି ତାଙ୍କର ବଡ଼ ସୁଖ୍ୟାତି ଅଛି । ଶୁଣାଯାଏ, କୌଣସି ଦିନ ଶିକାର ନ ମିଳିଲେ ସେହି ଉଦ୍ଦେଶ୍ୟରେ ପାଳିତ କୁକ୍କୁଟ ପ୍ରଭୃତି ଗୋଟାଏ କିଛି ଜୀବ ବଧ କଲେ ତାଙ୍କ ମସ୍ତିଷ୍କ ଥଣ୍ଡା ରହେ । ଏହି ଅଭ୍ୟାସକୁ ତାରିଫ କରି ସ୍ତ୍ରୀ କୁଆଡ଼େ ବହୁବାର କହିଥାନ୍ତି ଯେ, ଦିନେ କିଛି ଶିକାର କରିବାକୁ ନ ପାଇ ସାହେବ ନିଜର ବେକ କାଟିବାକୁ ଉଦ୍ୟତ ହୋଇଥିଲେ ।

ଜଲି ଓ ଟୋରି ଏକ ଅପରର କୋଳରେ ମୁହଁ ଗୁଞ୍ଜିଦେଇ ମହା ଆରାମରେ ନିଦ୍ରା ଯାଉଛନ୍ତି । ସେ ସମୟରେ ଅପରିଚିତ କୌଣସି ଲୋକ ଟୋରି ନିକଟକୁ ଯିବାକୁ ସାହସ କରିବା ବଡ଼ ଦୁରୁହ । ବିଶେଷତଃ ଟୋରି ଓ ଜଲି ଏକ ସଙ୍ଗରେ ଥିବାବେଳେ ଜମିଦାର ବାବୁଙ୍କ ମାଧିଆ ଗୁଜର ବ୍ୟତୀତ ଅନ୍ୟ କାହାରି ସେମାନଙ୍କ ପାଖ ପଶିବାକୁ ଉପାୟ ନାହିଁ । ଜମିଦାର ବାବୁଙ୍କ ଇଙ୍ଗିତରେ ଜଲିକୁ ଆଣିବା ଲାଗି ମାଧିଆକୁ ଯିବାକୁ ହେଲା । ତାର ପାଦଶବ୍ଦ ଶୁଣି ଟୋରି ଚେଇଁଉଠି ଭୁକିଲା । ମାଧିଆ ଚୁପ କହିବାରୁ ସ୍ୱର ବାରିପାରି ସେ ସ୍ଥିର ହୋଇ ରହିଲା, କିନ୍ତୁ ମାଧିଆ ଯେତେବେଳେ ଜଲିକୁ ଉଠାଇ ତାକୁ ସଙ୍ଗରେ ଆଣିବାକୁ ଗଲା, ସେତେବେଳେ ଟୋରି ତା' ସହିତ ଆସିବା ଲାଗି ଅସ୍ଥିର ହୋଇଉଠିଲା । ଅଗତ୍ୟା ମାଧିଆକୁ ଜଲି ସଙ୍ଗେ ସଙ୍ଗେ ଟୋରିର ଶିକୁଳି ଧରି ଆଣିବାକୁ ହେଲା ।

ତୋହର ବୁଦ୍ଧି ଅସମ୍ଭବ ରୂପେ ପ୍ରଖର ହେଲେ ହେଁ ଏ ସମୟରେ ଜଲିକୁ ତା' ନିକଟରୁ ଧରିନେବାର କାରଣ ସେ ପ୍ରଥମେ ବୁଝି ପାରିଲା ନାହିଁ । ମାଧିଆ ନିଜେ ତୋହକୁ ଧରି ଜଲିକୁ ଖାନ୍‌ସାମାମାନଙ୍କୁ ଦେଲା । ତୋହର ବଡ଼ ସନ୍ଦେହ ହେଲା । ତଥାପି ସେ ଚୁପ୍‌ହୋଇ ଥାଏ । ସାହେବ ସ୍ୱୀୟ ଆତତାୟୀ ପ୍ରକୃତିର ତର୍ପଣ କରିବା ଲାଗି ଉଦ୍ୟତ ହେଲେ । ଛୁରୀର ଫଳକ ଆଲୋକପାତରେ ଚକ୍‌ଚକ୍ ହୋଇଉଠିଲା ।

ଖାନ୍‌ସାମା ଦୁଇ ଜଣ ଜଲିର ଗୋଡ଼ ବାନ୍ଧି ତାକୁ ସ୍ଥିର କରି ଠିଆ କରାଇଲେ, ଯେପରି ଛୁରୀ ଚଳିବା ସମୟରେ ସେ କୌଣସି ରକମ ହଲଚଲ ହୋଇ ସାହେବଙ୍କ ଅସୁବିଧା ନ ଘଟାଏ । ଜଲିର ଭାବନା କ'ଣ ? ସେ ତାର ଜୀବନର ପ୍ରଭୁ ଜମିଦାର ବାବୁ ଏବଂ ସକଳ ଦୁଃଖବିପଦରେ ଆବାଲ୍ୟ ପରମବନ୍ଧୁ ତୋହକୁ ଦେଖି ନିର୍ଭୀକ ଭାବରେ ଠିଆ ହୋଇଥାଏ ଏବଂ ପାଦ ଦଉଟି ବନ୍ଧା ହେବାରୁ ଥରେ ତା'ର ଦୁଃଖସୁଖର ସାଥି ତୋହ ଏବଂ ଥରେ ତା'ର ଆଶୈଶବ ବିଶ୍ୱାସୀ ପ୍ରଭୁଙ୍କ ପ୍ରତି ଦୃଷ୍ଟି ପକାଉଥାଏ । ଜମିଦାର ବାବୁ ବନ୍ଧୁଙ୍କ ପତ୍ନୀ ଓ କନ୍ୟାଙ୍କ ନିକଟରେ ଖୁସିଗଳ୍ପରେ ନିମଗ୍ନ ଥାଆନ୍ତି । ତଥାପି ତାଙ୍କ ଭିତରୁ କିଏ କହୁଦେଉଥାଏ, ଜଲି ପ୍ରତି ଟିକିଏ ଦୃଷ୍ଟି ପକାଇବାକୁ । ସେ ଶୁଣି ନ-ଶୁଣିଲା ହୋଇ ହସଖୁସିରେ ନିମଗ୍ନ ଥାଆନ୍ତି । ତାକୁ ଚାହିଁଲେ ସେ ମନୁଷ୍ୟ ଭାଷାରେ ଯେପରି କିଛି ପ୍ରକାଶ କରିଦେବାକୁ ଯିବ ଏବଂ ସେଥିରେ ସେ ଦୋଷୀ ସାବ୍ୟସ୍ତ ହେବେ, ଆଉ ତାଙ୍କ ସୁନାମରେ ବାଧା ଘଟିବ । ସାହେବଙ୍କ ହାତରେ ଛୁରୀ ଦେଖି ତୋହର ସନ୍ଦେହ କ୍ରମେ ଦୃଢ଼ୀଭୂତ ହେବାକୁ ବସିଲାଣି । ସାହେବ ଛୁରୀ ପରିଷ୍କାର କରି ଯେତେବେଳେ ଆସନରୁ ଉଠିଲେ, ଜମିଦାର ବାବୁଙ୍କ ଦୃଷ୍ଟି ହଠାତ୍ କାହିଁକି ଜଲି ଉପରେ ପଡ଼ିଲା ଏବଂ ତାଙ୍କର ମନେ ହେଲା, ଜଲି ଅନେକକ୍ଷଣ ହେଲା ତାଙ୍କୁ ଏହିପରି କାତର ଦୃଷ୍ଟିରେ ଚାହିଁ ଜୀବନ ଭିକ୍ଷା କରୁଛି । ଜମିଦାର ବାବୁ କ'ଣ ଗୋଟାଏ ବାହାନାରେ ଆସନ ଛାଡ଼ି ତମ୍ବୁ ମଧ୍ୟକୁ ଚାଲିଗଲେ । ତୋହ କିନ୍ତୁ ଜଲିର ମିନତି ଶୁଣିଲା । ଆବାଲ୍ୟ ଅନ୍ନଦାତା ପ୍ରଭୁଙ୍କଠାରୁ ହତାଶ ଦୃଷ୍ଟି ଫେରାଇ ଜଲି ଯେତେବେଳେ ତା'ର ପ୍ରିୟ ସହଚର ତୋହକୁ ଚାହିଁଲା, ତୋହ ପ୍ରାଣରେ ତାହା ବାଜିଲା । ସାହେବଙ୍କ ହାତରେ ନୃଶଂସ ଛୁରୀକା ଦେଖି ତୋହର ଆଉ ବୁଝିବାକୁ ବାକି ରହିଲା ନାହିଁ । ଏହି ସ୍ଥଳରେ ସେ କେତେ ଛେଳି, ମେଣ୍ଢା କଟାଯାଇଥିବାର ନିଜେ ଦେଖିଛି । ତା'ର ପ୍ରାଣ-ପ୍ରିୟ ଜଲିର ଦଶା ତାହାହିଁ ହେବ, ଏଥିରେ ଆଉ ତା'ର ସନ୍ଦେହ ନାହିଁ ।

ସାହେବ ଯେତେବେଳେ ଛୁରୀ ଧରି ଓହ୍ଲାଇ ଆସିଲେ, ତତ୍‌କ୍ଷଣାତ ତୋହ ଗୋଟାଏ ଝିଙ୍କାରେ ମାଧିଆ ହାତରୁ ମୁକ୍ତ ପାଇ ସଙ୍ଗେ ସଙ୍ଗେ ଜଲିକୁ ଧରିଥିବା

ଜଣେ ଖାନ୍‌ସାମାକୁ ଆଘାତ କଲା । ସାହେବ, ଭୃତ୍ୟ, ଖାନସାମା ପ୍ରଭୃତି ଇତସ୍ତତଃ ହୋଇ ଦ୍ରୁତ ଗତିରେ ତମ୍ବୁ ମଧ୍ୟରେ ପ୍ରବେଶ କଲେ । ଜମିଦାର ବାବୁ ତମ୍ବୁ ମଧ୍ୟରେ ଅନ୍ୟମନସ୍କ ଥିଲେ । ସାହେବଙ୍କର ଏ ଦୁର୍ଦ୍ଦଶା ଦେଖି ସଙ୍ଗେ ସଙ୍ଗେ ତାଙ୍କୁ କ୍ଷମା ମାଗିଲେ ଏବଂ ମାଧିଆ ଉପରେ କ୍ରୋଧରେ ଜଳି ଉଠିଲେ । ତଥାପି ଅନ୍ତରର କି ଗୋଟାଏ ଅବ୍ୟକ୍ତ ବ୍ୟଥା ତାଙ୍କ କଥାରୁ ଅସ୍ପଷ୍ଟ ପ୍ରକାଶ ପାଉଥିଲା ।

ମାଧିଆ ଅତି କଷ୍ଟରେ ନିଜେ ତେ ଖଦ୍ୱାରା ଆଘାତପ୍ରାପ୍ତ ହୋଇ ଗୋଟାଏ ଗଛରେ ନେଇ ତାକୁ ଉତ୍ତମରୂପେ ବାନ୍ଧିଦେଲା । ସାହେବ ହସି ହସି ଛୁରି ହାତରେ ପୁନଶ୍ଚ ତମ୍ବୁ ମଧ୍ୟରୁ ବାହାରିଗଲେ । କୌତୁକ କରିବା ଛଳରେ ଆବଦ୍ଧ ଡୋରାକୁ ଛୁରି ଦେଖାଇ ଜଳି ଅଭିମୁଖରେ ଚାଲିଲେ । ଜମିଦାର ବାବୁ ଦେଖିଲେ, ଜଲି ପୂର୍ବପରି ସେହି କାତର ଦୃଷ୍ଟିରେ ତାଙ୍କପ୍ରତି ଚାହିଁ ସାହାଯ୍ୟ ଭିକ୍ଷା କରୁଛି । ସେ ହଠାତ୍ ଉଠିପଡ଼ି ସାହେବ ବନ୍ଧୁଙ୍କୁ କ'ଣ କହିବାକୁ ଯାଉଥିଲେ, "ଇସ୍, ମୁଁ କଣ ପାଗଳ" କହି ପୁଣି ଆସନ ଗ୍ରହଣ କଲେ । ସେ ସ୍ଥାନରୁ ଉଠି ଦୂରକୁ ଯିବାକୁ ତାଙ୍କର ଇଚ୍ଛା ହେଉଥିଲେ ହେଁ ସାହେବ କିଛି ମନେକରିପାରନ୍ତି, ଏହି ଆଶଙ୍କାରେ ସେ ଚେଷ୍ଟାରୁ କ୍ଷାନ୍ତ ହେଲେ । ସାହେବ ଜଲି ନିକଟକୁ ଆସିବାର ଦେଖି ଜମିଦାର ବାବୁ ରୁମାଲ କାଢି ମୁହଁ ଘୋଡ଼ାଇଲେ । ଡୋରାର ଭୀତବ୍ୟାକୁଳ କ୍ରନ୍ଦନ ତାଙ୍କ କର୍ଣ୍ଣରେ ପ୍ରବେଶ କରୁଥାଏ । ତାହାରି ମଧ୍ୟରେ ଶୁଣିପାରିଲେ, ଗୋଟିଏ ରୁଦ୍ଧକଣ୍ଠର ବିଳାପ । ସେ କେବଳ କର୍ଣ୍ଣରେ ନୁହେଁ ମର୍ମସ୍ଥଳୀରେ ପ୍ରବେଶ କଲା । ସେ ସ୍ୱର ଜଲିର । ରୁମାଲ କାଢ଼ି ଚାହିଁଲେ ଶେଷ !

ଖାନାଟେବୁଲରେ ବସି ବସି ଜଲିର ମାଂସ ଭକ୍ଷଣ କଲାବେଳେ ଜମିଦାର ବାବୁଙ୍କ ଅନ୍ତରାତ୍ମା ନାହିଁ ନାହିଁ କରି ଉଠିଲା । ସେ ପ୍ରାଣପଣେ ଚେଷ୍ଟାକରି ବନ୍ଧୁମାନଙ୍କ ସଙ୍ଗରେ ଯୋଗଦେଲେ । ବଡ଼ କଷ୍ଟରେ ଯତ୍‌ସାମାନ୍ୟ ଆହାର କଲେ । ଭିତରର କି ଗୋଟାଏ ଅବ୍ୟକ୍ତ ବ୍ୟଥାରେ ପ୍ରାଣ ଆକୁଳ ହୋଇଉଠିଲା । ରକ୍ଷା ଏତିକି, ଅତିଥିମାନଙ୍କ ମଧ୍ୟରୁ କେହି ତାହା ଲକ୍ଷ୍ୟ କରିପାରି ନଥିଲେ । ଶୋଇବାକୁ ଯିବାବେଳେ ମାଧିଆ ଆସି ଖବର ଦେଲା, ଡୋରାକୁ ମାଂସ ଆଦି ଯେତେ ଯାହା ଦିଆଗଲା, ସେ ତାହା ସ୍ପର୍ଶ କଲା ନାହିଁ ।

ଜମିଦାର ବାବୁ ଅନ୍ୟମନସ୍କ ହୋଇ ଶୟନ କକ୍ଷକୁ ଗଲେ । ନିଦ୍ରା ଆସୁ ନଥାଏ, ବିଛଣାରେ ପଡ଼ି କେତେ କଅଣ ଭାବୁଥାନ୍ତି । ଏ ଜଙ୍ଗଲ ସେ ଜଙ୍ଗଲ ବୁଲୁଛନ୍ତି, ହଠାତ୍ ମେଘର ଆକ୍ରମଣ ଓ ଚତୁର୍ଦ୍ଦିଗ ଅନ୍ଧକାରାଚ୍ଛନ୍ନ—ପୁଣି ସେହି ମଧ୍ୟାହ୍ନ ସମୟ, ଗୁଳି ଖାଇ ମାଆଟି ତାର ଭୂତଳଶାୟୀ ହେଲା, ଆଉ ନବୋଧ ଶିଶୁ ଅବାକ୍ ହୋଇ ଅନାଇ ରହିଲା, ଟିକିଏ ହଲଚଲ ନାହିଁ, ସ୍ୱେଚ୍ଛାରେ ଆତ୍ମସମର୍ପଣ କଲା । ପୁଣି ସେହି ଘନ ଅନ୍ଧକାର—ଦୁଇ ବନ୍ଧୁ ସ୍କନ୍ଧରେ ସର୍ଚ୍ଚ୍‌ଲାଇଟ୍ ରଖି ତମ୍ବୁ

ଅଭମୁଖରେ—ଛୁରୀ ଧର ସାହେବଙ୍କର ନୃଶଂସ ହାସ୍ୟ, ଆଉ ସେହ ହରଣ ଶିଶୁଟିର କରୁଣ ଦୃଷ୍ଟିରେ ଜୀବନଭକ୍ଷା ଏବଂ ମନୁଷ୍ୟ ବାଦ୍ୟ ଉଚ୍ଚାରଣ—'ମୁଁ ପର ମୋ ମା'କୁ ଗ୍ରଭ ଭ୍ରମକୁ ଆଣ୍ଟାସ୍ଥ କର ଧବଥିଲ ?' ଜମିଦାର ବାବୁ ଚମକଉଠି ଭାବଲେ, ଏ ସ୍ୱପ୍ନ । ପୁଣି ନଦ ଆସିଲ, ପୁଣି ସେହ ତାକ୍ ଉମିଳଉଭର ଗୃହାଣୀ, ପୁଣି ସେହ ମର୍ମବଦାରକ ବଳାପ । ଅରକୁ ଅର ନଦ ଭାଙ୍ଗିଯାଏ, କନ୍ତୁ ସେହ ଏକ ସ୍ୱପ୍ନ ।

ପ୍ରଭାତରୁ ଉଠି ଫେରିସିବାର ବନ୍ଦୋବସ୍ତ ହେଲଗଲ । ମଟରରେ ବନ୍ଧୁ ଓ ବନ୍ଧୁ ପରିବାରଙ୍କ ସହତ ଜମିଦାର ବାବୁ ଆସ ଗୁଲଗଲେ । ହସଖୁସିରେ ମନଟାକୁ ଭୁଲାଇବାର ଯେତେ ଚେଷ୍ଟା କଲେ ମଧ ଜମିଦାର ବାବୁଙ୍କ ଅନ୍ତରରେ ହରଣ ଶିଶୁର ସେହ ଭୁକ କ୍ରନ୍ଦନର ବରାମ ନାହିଁ । ବନ୍ଧୁ ପରିବାର ସେହ ଦନ ବଦାୟ ନେଇ ଗୁଲଗଲେ ।

ମାଧିଆ ଡୋଗକୁ ଟାଣି ଟାଣି ବହୁ କଷ୍ଟରେ ଧଇଁସଇଁ ହୋଇ ଆସି ପହଞ୍ଚିଲ ଏବଂ ବାବୁଙ୍କୁ କହିଲ,ଡୋଗ ସେ ସ୍ଥଳରୁ ଆସିବାକୁ ଏକାବେଳେକେ ଅମଙ୍ଗ । ଜମିଦାର ବାବୁ ସେତେବେଳେ ଏକାକୀ ବସି ମନେ ମନେ କ'ଣ ଭାବୁଥିଲେ । ମାଧିଆ ଆଉ କଛି ନ କହି ଚୁପ ହୋଇ ଗୁଲଗଲ । ସେତେବେଳକୁ ଜମିଦାର ବାବୁଙ୍କର ପ୍ରବଳ ଆତ୍ମଗ୍ଳାନ ଉପସ୍ଥିତ । ବଡ଼ ସଯମରେ ସେ ନଜକୁ ସ୍ଥିର କର ରଖିଛନ୍ତି । ନ ହେଲେ ଲୋକମାନେ ତାଙ୍କୁ ପାଗଲ ବୋଲ ଭାବି ପାରନ୍ତେଣି । ଏହ ଜ୍ଞାନଶୂନ୍ୟ କୁକୁରଟାର ପାଦତଳେ ପଡ଼ି କ୍ଷମା ଭକ୍ଷା କରିବାକୁ ତାଙ୍କ ପ୍ରାଣ ଭତରୁ ଯେପର କଏ ବାଧ କରୁଛି । କାରଣ ସେ ନଜକୁ ତାଠାରୁ ବହୁ ନମ୍ନରେ ଦେଖୁଛନ୍ତି । "କାହିଁ ମାଂସାସୀ କୁକୁରଠାରୁ କ'ଣ ମୋ ଅନ୍ତର ଏତେଦୂର ନୃଶଂସ ! ଛିଃ, ଛିଃ, ସସାରଟାରେ କଣ କେବଳ ଦୁର୍ବଳକୁ ଅଧୀନ ରଖି ଅତ୍ମସାତ୍ କର ଉଦରସାତ୍ କର ଜୀବନଧାରଣ କରିବାକୁ ଜାତ ହୋଇଛୁ ? କଣେ ଦଣ୍ଡ ବୋଲ ଅଉ ଲୋକଙ୍କର ମୂର୍ଖ ଏକାନ୍ତ ଆବଶ୍ୟକ ! ମନୁଷ୍ୟ ଯେ ବଶ୍ୱତ୍ରାସ କରିବାକୁ ବସିଛୁ, ଏହାର ଯୁକ୍ତ କ'ଣ ନା, ସେ ସବୁ ଜୀବଠାରୁ ବୁଦ୍ଧିମାନ୍ ଓ ବବେକବାନ୍ !" ସତ୍ୟ ସତ୍ୟ, ଜମିଦାର ବାବୁଙ୍କର ଖ୍ରୀତଣ ବସ୍ମୟ ଓ ବକାର ଜାତ ହେଲ । ଯେଉଁ ଜହ୍ୱା ଜଳର ମାଂସସ୍ୱାଦ ପରୀକ୍ଷା କରିଥିଲ, ତାହା ଜଡ଼ର ଅବଶ ହୋଇ ଆସିଥିଲ । ଜଳର କଲଜା ଯେଉଁ ଗଳା ମଧ୍ୟରେ ଯାଇଥିଲ, ତାହା ସଙ୍କୁଚତ ହୋଇ କପଳ ରୁଦ୍ଧ ହୋଇଆସିଲ । ଜମିଦାର ବାବୁ ମନେକଲେ, ସେ ଗଳା ଯଦ ଚରଦନ ପାଇଁ ରୁଦ୍ଧ ହୁଏ ଏବଂ ସେ ଜହ୍ୱା ଯଦ ଅବଶ ହୋଇ ଛିନ୍ନ ହୋଇପଡ଼େ ତେବେ ତାଙ୍କର ମର୍ମନ୍ତୁଦ ଯାତନାର କିଞ୍ଚିତ ଅବା ଉପଶମ ହୋଇପାରନ୍ତା ।

ଏହି ସମୟରେ ପଛରୁ କିଏ ଡାକିଲା, "ଜଳ କାହିଁ ?" ଜମିଦାର ବାବୁ ଫେରି ଚାହିଁ ଦେଖିଲେ, ତାଙ୍କର ସେହି ଚାରିବର୍ଷର ଶିଶୁକନ୍ୟାକୁ । ସେ ଉତ୍ତର କିଛି ନପାଇ ତତ୍‌କ୍ଷଣାତ ଉଠିଯାଇ କନ୍ୟାକୁ ନିଜର ଉତପ୍ତ ବକ୍ଷରେ ଚାପିଧରି କହିଲେ "ଅଛି ମା ଅଛି " ସେ କଥାରେ କର୍ଣ୍ଣପାତ ନ କରି ମୁହଁ ଫୁଲାଇ, ଆଖି ଛଳ ଛଳ କରି କହିଲା, "ମିଛକଥା, ମାଧିଆ କହିଲା, ସେ ସାହେବ ତାକୁ ମାରିଚି, ମୁଁ ସାହେବକୁ ମାରିବି ।" କନ୍ୟାର ରାଗ ଓ ଅଭିମାନ ଦେଖି ଜମିଦାର ବାବୁଙ୍କ ଚକ୍ଷୁରୁ ଲୋତକ ବର୍ଷିବାକୁ ଲାଗିଲା । ସେ ତାହା କନ୍ୟା ନିକଟରୁ ଲୁଚାଇବାକୁ ଯାଇ ଧାଇହାତରେ କନ୍ୟାକୁ ଦେଇ ଚାଲିଗଲେ ଏବଂ ହୃଦୟର ଆବେଗ ଅସହ୍ୟ ହେବାରୁ ବିଛଣାରେ ପଡ଼ି ଭେ-ଭେ ହୋଇ କାନ୍ଦିବାକୁ ଲାଗିଲେ । କିନ୍ତୁ କନ୍ୟାର ସେହି ପ୍ରଶ୍ନ "ଜଳ କାହିଁ" ତାଙ୍କର ବାରମ୍ବାର ମନେପଡ଼ିଲା । ସେ ନିଜକୁ ସେହି ପ୍ରଶ୍ନ କରି ସ୍ୱୀୟ ଅଙ୍ଗପ୍ରତ୍ୟଙ୍ଗକୁ ଚାହିଁଲେ । ହରିଣ ଶାବକର ପ୍ରତ୍ୟେକ ଖଣ୍ଡ ଭୁକ୍ତମାଂସର କ୍ରନ୍ଦନ ତାଙ୍କର ପ୍ରତ୍ୟେକ ଲୋମକୂପରୁ ଫୁଟି ବାହାରିବାର ସେ ଶୁଣିଲେ । ତାଙ୍କର ପ୍ରତ୍ୟେକ ଶିରାରେ ଏ କ୍ରନ୍ଦନ ବିଜୁଳି ଗତିରେ ଚମକିବାକୁ ଲାଗିଲା । ଜମିଦାର ବାବୁ ରୁଗ୍‌ଣ ହୋଇପଡ଼ିଲେ ଦୁଇ ସପ୍ତାହ ଜ୍ୱର ଓ ଅନାହାର । ସମସ୍ତେ ଭାବିଲେ, ଜମିଦାର ବାବୁ ଏ ଯାତ୍ରା ପାର ପାଇବେ ନାହିଁ । କିନ୍ତୁ ସେ ସୁସ୍ଥ ହେଲେ, ଅଥଚ ନୂଆ ଲୋକ ହୋଇ । ସାହେବଙ୍କ ଉପଯୋଗୀ ଅତିଥିଶାଳା ଦରିଦ୍ରମାନଙ୍କ ପାଇଁ ପାନ୍ଥ ନିବାସରେ ପରିଣତ ହେଲା । ଜମିଦାର ଘରେ ଆମିଷ ପ୍ରବେଶ ନିଷିଦ୍ଧ ହେଲା ଏବଂ ଜମିଦାରୀ ମଧ୍ୟରେ କେହି ମୃଗ ଶିକାର କମ୍ବା ବଧ କରିପାରିବେ ନାହିଁ ବୋଲି ହୁକୁମ ଜାରି ହୋଇଗଲା ।

ତୋରା କୌଣସିମତେ ଆହାର କଲା ନାହିଁ । ଦିନମାନ ନିରାହାରରେ ପଡ଼ି ରହିଲା ଏବଂ ଜମିଦାର ବାବୁଙ୍କ ପ୍ରଥମ ଅସୁସ୍ଥତା ଦିନ କୌଣସିମତେ ମୁକ୍ତି ପାଇ ଖସି ଚାଲିଗଲା । ମାଧିଆ ଖୋଜି ଖୋଜି ତାକୁ ସେହି ତମ୍ବୁ ପଡ଼ିଥିବା ଜାଗାରେ ଜଳର ରକ୍ତଭୂମିକୁ ଆଘ୍ରାଣ କରୁଥିବା ଦେଖିଲା । ଏହିଠାରେ ସେ ତାର ପ୍ରିୟ ସଖାକୁ ହରାଇଛି—କୌଣସିମତେ ଯେବେ ସନ୍ଧାନ ପାଏ ! ସେଥିଲାଗି କରୁଣ ବିଳାପ କରି ସେ ତାକୁ ଖୋଜି ବୁଲୁଛି । ମାଧିଆ ତାକୁ ଧରିଆଣିଲା । ଯେତେ ଯତ୍ନ କରାଗଲା, ସମସ୍ତ ବିଫଳ ହେଲା । ପୁଣି ଦିନେ କପରି ସେ ଅଦୃଶ୍ୟ ହୋଇଗଲା । ଆଉ ଯେତେ ଯହିଁ ଖୋଜିଲେ ମିଳିଲା ନାହିଁ । କେହି କେହି କହନ୍ତି, ସେ ସେହି ତମ୍ବୁ ପଡ଼ିଥିବା ଜାଗାରେ ଯାଉଛି । କାଠୁରିଆମାନେ କହନ୍ତି, ନିବିଡ଼ ଜଙ୍ଗଲ ମଧ୍ୟରେ କାଠ କାଟିଲାବେଳେ ସେମାନେ ବହୁବାର ବୁଢ଼ ପଶୁକଣ୍ଠର ଗୋଟିଏ କରୁଣ ଆର୍ତ୍ତ ବିଳାପ ଶୁଣିପାରନ୍ତି । ସେ କିନ୍ତୁ ଜଳ କି ନା ତୋରାର ?

●

# ମଶାଣିର ଫୁଲ

● ସଚ୍ଚିଦାନନ୍ଦ ରାଉତରାୟ

ପୋଡାବସନ୍ତ ଶାସନର ଜଗୁ ଡୁଆଁ କୀର୍ତ୍ତନ କରେ, ମୃଦଙ୍ଗ ବଜାଏ, ଗଞ୍ଜେଇ ଖାଏ, ଆଉ ମୁଦ୍ଦାର ପୋଡେ । ଭଲ ମଡ଼ାଚଣ୍ଡିଆ ଭାବରେ ସେ ଖଣ୍ଡମଣ୍ଡଳରେ ଜଗୁର ବେଶ୍ ଗୋଟାଏ ନାଆଁ ବି ଅଛି ।

ମୁଦ୍ଦାରଟା ଯେବେ ଜୁଇ ନିଆଁ ଉପରେ ସେଁ ସେଁ କରେ କି ତାର ଗୋଡଟା ନିଆଁ ସେକରେ ସେତେଙ୍ଗା ହୋଇ ଉପରକୁ ବାହାରି ପଡେ କିମ୍ବା ପେଟ ଭିତର ଅନ୍ତବୁଜ ଲାଗୁଡାନରୁ ପାଣି ନିଗିଡି ନିଆଁ ଧରେ ନାହିଁ, ତେବେ ଅନ୍ୟ ମାଲଗାଇମାନେ ଜଗୁ ଡୁଆଁ ମୁହଁକୁ ଅନାନ୍ତି, ତାର ପରାମର୍ଶ ଲୋଡ଼ନ୍ତି ।

ଗଞ୍ଜେଇ ନିଶାରେ ଟିକିଏ ବେହୁସିଆର ହୋଇ ଜଗୁ ହୁଏତ ମଶାଣି-ପଦାରେ ଖଣ୍ଡେ ଦୂରରେ ଚପି ଢୁଲାଉଥାଏ । ସେ ଧଡ଼ପଡ଼ ହୋଇ ଉଠିପଡ଼ି ଠିଆ ହୁଏ, ତା'ପରେ ବୋବେଇ ଭିତରୁ ଗୋଟାଏ ଉନହାତିଆ ବାଉଁଶ ଓଟାରି ଆଣି 'ମାର—ମାର' କହି ମୁଦ୍ଦାର ଉପରେ ବସାଇଦିଏ ଉନ ଗୁଣଟା ପାହାର ।

ମୁଦ୍ଦାର ମୁଣ୍ଡଟା ହୁଏତ ଚୂନା ଚୂନା ହୋଇଯାଏ · ଦନ୍ତ ବାହାରିପଡ଼ି ଖଣ୍ଡେ ଚଉହାରେ ନିଆଁ ନଉଯାଏ । ଅମାନିଆ ଗୋଡଟା ଠେଙ୍ଗା ମାଡ଼ରେ ଆଣ୍ଠୁ ଠାରୁ ଭାଙ୍ଗିପଡ଼ି ଲେଟେ ତଳେ କାଠ ସନ୍ଧରେ । ପେଟଟା ଫାଟି ହୋଇଯାଏ ଦି'ଫାଳ ଅନ୍ତନାଡ଼ି ଭିତରେ ନିଆଁର ଲହ ଲହ ଜିଭ ଘୁଉଁ ଘୁଉଁ ଖେଳିଯାଏ । ଆଖି ପିଛୁଳାକରେ ସବୁ ଜଳପୋଡ଼ି ହୋଇଯାଏ ପାଉଁଶ ।

ଅଣ୍ଟ ଏ ପାଉଁଶ, କୁଳ, ତ୍ରୁଷ୍ଣୀ, ହାଣ୍ଡି ଖପରା, ଛିଣ୍ଡା କନ୍ତରା,-ସନ୍ତସନ୍ତିଆ ମଶାଣି ପଦା । ନଖ, ବାଳ, ଟିକ୍ନି ଟିକି ହାଡ଼, ଅଲରା ବଲରା ଅସନା !!

ଜଗୁ ଡୁଆଁ ଖୁସି ହୋଇ ଫେରିଆସେ । ପୋଖରୀ ଗୁଠରେ ତେଲ ଲଗାଇ ଲଗାଇ ଜଙ୍ଘ ଉପରେ ଚାପୁଡ଼ା ମାରି ଆରାମରେ କହେ, "ଦିଅଁଙ୍କ କୃପାରୁ କାମଟା ସୁରୁଖୁରୁରେ ବଢ଼ିଗଲା ।"

ଗାଆଁର ଯେତେବେଳେ ଝାଡ଼ାବାନ୍ତି ବ୍ୟାପେ···ଠାକୁରାଣୀ ପଡ଼ନ୍ତି···ମଡ଼ କୁଢ଼ କୁଢ଼ ହୁଏ, ଜଗୁ ଡୁଆଁର ଖାତିର ସେତେବେଳେ ଗାଁରେ ଖୁବ ବଢିଯାଏ । ସମସ୍ତେ ଆସି ତାକୁ ଖୋସାମତ କରନ୍ତି । କିଏ ଆଖିରୁ ଲୁହ ଗଡ଼ାଏ, କିଏ ଖୋସଣୀରୁ ପଇସା ବାହାରି କରେ, କିଏ ବା ହାତ ଓଠ ଧରି 'ବାପ ଲୋ, ଧନଲୋ'

କରେ ଜଗୁ ଭଉଣୀ ବଡ଼ ଗମ୍ଭୀର ହୋଇ ସଭିଙ୍କ ନେଇତ୍ୟ କଥା ଶୁଣେ, କିନ୍ତୁ ହଠାତ୍ କିଛି କହେ ନାହିଁ ।

"କାଲି ସଞ୍ଜଠୁଁ ଘର ଭିତରେ ମଡ଼ା ପଡ଼ି ଗନ୍ଧେଇଲାଣି ।"

"ଭୁଆସୁଣୀ ବୋହୁଟା ଦୁଇ ଦିନ ହେଲା ଘରକଣରେ ମରି ସଡ଼ୁଛି•••।"

ଏହିପରି ନାନା ଭଳିର ଅଳ ଅର୍ଦ୍ଦଟ ଜଗୁ ପାଖରେ ଆସି ପହଞ୍ଚେ ।

ଜଗୁ ତାର ପାଉଣାପତ୍ର ବିଷୟରେ କମା କାହାର ଉପ୍ରୋଧ ରଖେ ନାହିଁ । ଭରଏ ଗଡ଼ୁଭିଇ, ଟେଳାଏ ଅଫିମ, ଶୁଖଅଣା ଅଣ୍ଟା ଖୋସା ନ ହେଲେ ସେ ଲୁଆଡ଼କୁ ଚର୍ଚ୍ଚିବ ନାହିଁ । ଏହାଛଡ଼ା କଫାଖଚ, ଗୁଠାଲୁଗା, ଦଶଘର ଭମିଡା ଉପୁରି ଲାଭ ରହିଛି ।

ସଧବା ଝିଅଙ୍କ ମଡ଼ା ହେଲେ ଜଗୁର ଟିକିଏ ଲାଭ ବେଶୀ । ଧନୀଘର ହୋଇଥିଲେ କାନର ନୋଲିଟା, ମଲିକଡ଼ିଟା କମ୍ଭା ନାକର ଗୁଣାଟା ଆଉ ନ ଧନୀ ଘର ହୋଇଥିଲେ ଗୋଡ଼ ଆଙ୍ଗୁଠିର ରୁପାମୁଦିଟା ଜଗୁକୁ ସାଇ-ଦକ୍ଷିଣା ମିଳେ । ମୁର୍ଦ୍ଦାରଟାକୁ କନାଁରେ ଚଢ଼ାଇବା ଆଗରୁ ସେ ତା ଦେହଟାକୁ ଖିନଭିନ କରି ପରଖି ନେଇ କେଉଁଠି ଅଳଙ୍କାର ପତ୍ର କିଛି ଅଛି କି ନାହିଁ ଦେଖେ, ଥିଲେ କାଢ଼ି ରଖେ । ବେଳେ ବେଳେ ମଡ଼ା ଦେହରୁ ନୋଲି, ମଲିକଡ଼ି କି ଗୁଣା ବସଣି ସହଜରେ ନ ବାହାରିଲେ ଜଗୁଭଉଣୀ ବିରକ୍ତ ହୋଇ ଦାନ୍ତକାମୁଡ଼ି ବହୁତ ଝିଙ୍କା ଓଟରା କରି ଅଳଙ୍କାରଗୁଡ଼ାକ ମୁର୍ଦ୍ଦାରର ନାକରୁ, କାନରୁ ଛିଣ୍ଡାଇ ଆଣେ । ନାକଦଣ୍ଡି ଛିଣ୍ଡିଯାଏ, କାନଟା ଖଣ୍ଡିଆ ହୋଇଯାଏ, ନେଳିଆ ନେଳିଆ ରକ୍ତ ବୋହିଆସି ଶବଟା ମୁହଁଯାକ ସାଲୁବାଲୁ ହୋଇଯାଏ, କିନ୍ତୁ ଜଗୁଭଉଣୀର ସେଥିପ୍ରତି ଖାତିର ନଥାଏ । ଏଇଟା ତାର ନିତିଦିନିଆ ଦେହପଶିଆ କାମ, ଏକପ୍ରକାର ଉପରି ବୃତ୍ତି । ଇମିତି କରି କରି ସେ ପଥର ପାଲଟି ଯାଇଚି ।

ପୋଖତ ମୁର୍ଦ୍ଦାର ମିଳିଲେ ଜଗୁ ଭଉଣୀ ଧୋବଲି ଚକଟିଏ ଅଣ୍ଟାରେ ନ ଖୋସିଲେ କାନ୍ଧକୁ କୋକେଇ ଉଠାଇବ ନାହିଁ । ତା ପାଉଣାରୁ ଟିକିଏ ଏପାଖ ସେପାଖ ହେଲେ ସେ ବାସିମଡ଼ା କରିଦେବ ବୋଲି ଧମକ ଦିଏ...ଅନ୍ୟ ମାଳିସାଇ ମାନଙ୍କୁ ଶିଖେଇ ମନେଇ ମେଳବାନ୍ଧି ଅଡ଼ି ବସେ ।

ଟଙ୍କାଟାଏ ମିଳିଲେ ଅନ୍ୟ ବେଢ଼ଙ୍ଗ ସ୍ୱର ତାଳେ ତାଳେ ପାଦ ପକାଇ "ରାମ ନାମ ସତ୍ୟ ହେ" ପାଟି କରି ଜଗୁ ଭଉଣୀ ବଡ ପତିଆରାରେ ଦାଣ୍ଡ ମଝିରେ ପାହୁଲ ପକାଇ ଚାଲେ । ତାର ମୁଣ୍ଡର ପଥର ପରି କଳା ଦେହରେ ଧଳା ପଇତା ଖିଅକ ଦୂରରୁ ଜକଜକ ଦିଶୁଥାଏ—।

ତାର ବଡ଼ ପାଟିରେ ଗାଆଁ ସାରା ଉଚ୍ଛୁଳି ପଡ଼େ । ସାହୁସାହୁକାର ମରତ ମାଇପେ ଅସି ଦାଣ୍ଡରେ ଗଦା ହୋଇଯାନ୍ତି । ସାନ ସାନ ପିଲାଗୁଡ଼ାକ ତାର ଭୟରେ ଯାଇ ଲୁଚନ୍ତି ଘରେ ।

ମଶାଣିରେ ସଧବା ଏ ନବ ତରୁଣୀରେ ଗର୍ଭିଣୀ ମାଇପିର ପେଟ ଫାଡ଼ି ପିଲାଟାକୁ ବାହାର କରିଦେଲେ ଜଗୁ ଢ଼ଆଙ୍କ ଦୁଇଟା ଚୁଲି ଖୋଳି ମା' ପିଲା ଦୁହିଁଙ୍କି ଚିତ୍ପଟାଙ୍କ୍ କରି ଶୁଆଇଦିଏ । କେବେ କେବେ ପୁଣି ଗୋଟାଏ ଜୁଇରେ ଦୁହିଁଙ୍କି ଲଗାଲଗି କରି ଏକାଠି ଶୁଆଇଦେଇ ନିଆଁ ଲଗାଇ ଦିଏ । ଗୋଟାକରେ କାଗା ନ ହେଲେ ଭେଞ୍ଚଣାକାଠି ଖଣ୍ଡକରେ ସେ ପିଲାଟାକୁ କ୍ଷେଞ୍ଚ କୋଞ୍ଚ କରି ମାଉଁସ ପିଣ୍ଡୁଳାଏ ପରି ଜଳନ୍ତା କାଠ ସନ୍ଧିରେ ଫୋପାଡ଼ିଦିଏ ।

ଏହିପରି ଭାବରେ ଜଗୁ ଢ଼ଆଙ୍କ ଅମଳ ହେଉଥିବା ଧାନ କେତେ ଭରଣ ବାଦ ଦେଲେବେଲେ ଉପୁରି ଦ'ପଇସା ରୋଜଗାର କରି ନିଜେ ଚଳେ, ଘର ଚଳାଏ, ଦବାନବା, ବାହା ଦେଖାର କରେ ।

କେହି ତାକୁ ମୁହଁ ଫିଟାଇ କିଛି କହିପାରନ୍ତି ନାହିଁ । ସେ ଗାଁରେ ଜଗୁଛଡ଼ା ଅନ୍ୟ ପୋଖତ ଜାଣିବା ବ୍ରାହ୍ମଣ ମାଲିଶିଆ ଆଉ କେହି ନାହାନ୍ତି ।

କେହି ଜଗୁର ପାଉଣା କମାଇବାକୁ ବସିଲେ ଜଗୁ ନିଜର କୃତିତ୍ୱ ଗୁଳନାରେ ସେ ଦାବୀ କରୁଥିବା ପାଉଣା କିଛି ନୁହେଁ ବୋଲି ନାନା ପ୍ରକାର ଯୁକ୍ତି ଦେଖାଏ । ନିଜର ପଣତାଗ୍ର ଦେଖାଇବାକୁ ଯାଇ ସେ ଅତୀତର ନାନା ଘଟଣାର ପୁନରାବୃତ୍ତି କରି ପ୍ରମାଣ କରେ ଯେ, ତା' ଭଳି ମୁର୍ଦ୍ଦାରପୋଡ଼ିବା ଲୋକ ଏ ଜଗତରେ ଦୁଇଜଣ ନାହାନ୍ତି । ସେ ଭାରି ଗର୍ବ ଅନୁଭବ କରେ ।

ଗତସାଲେ ନରସିଂହ ମିଶ୍ରଙ୍କ ଭାଇଯାକୁ କିମିତି ତ୍ ଛୁ ଅସ୍ୱାଭାବିକ ମେଘ ବର୍ଷାରେ ପୋଡ଼ିଦେଇ ଅଇଲା, ଯକ୍ଷ୍ମବେଲେ ସାତଚଉଆ ଚୋଟା ମୁଣ୍ଡରେ କିମିତି ଗୋଟାଏ ବେଢ଼ କଣ୍ଟା ମାଦଳ ବାଗୁଡ଼ରେ ପଡ଼ିଲା, ତାପରେ ପୁଷ୍ପମାସିଆ ଶୀତଦିନ ରାତିରେ କିମିତି ଜଳଓଦର ବେମାରରେ ମରିଥିବା ନାଥ ବ୍ରହ୍ମାକୁ ପୋଡ଼ିଲାବେଳେ ମୁର୍ଦ୍ଦାର ପେଟରୁ ଦୁଇମାଠିଆ ପାଣି ବାହାରି ଅସି ଜଇ ନିଆଁ ଲିଭାଇ ଦେଲା, ଜଗୁ ପୁଣି କିମିତି କୌଶଳ କରି ଏଡ଼େ ବଡ଼ ଅସାଧ୍ୟ ମଢ଼ାକୁ ପୋଡ଼ି ପାରିଲା, ଏହି ସବୁ ପୁରୁଣା କାହାଣୀଗୁଡ଼ାକ ବଡ଼ ଦକ୍ଷଭାବରେ ସେ ବର୍ଣ୍ଣନା କରିଯାଏ ।

ଜଗୁ ଢ଼ଆଙ୍କର ଅଭିଜ୍ଞତା ଓ ମୁର୍ଦ୍ଦାର ତାହା ବିଦ୍ୟାର ଅଗାଧତା ଯେ କେତେ ବେଶୀ ତାହା ଯେ କୌଣସି ଗ୍ରାହକ ତା ସହିତ ପଦେଏ କଥାଭାଷା ହେଲେ ବେଶ୍ ବୁଝି ପାରିବ ।

ଯେଉଁ ସନ୍ଧ୍ୟାରେ ଜମ୍ବୁ ଢଆଙ୍କ ଭାଗବତ ଘରେ ବସି ନିଜ ଅନୁଭୂତିର କଥାଗୁଡ଼ାକ ସମସ୍ତଙ୍କି ଥରେଲେଖାଏଁ କହି ଶୁଣାଏ । ଝିପି ଝିପି ମେଘୁଆ ପାଗରେ ଅନେକ ଶ୍ରୋତା ତାକୁ ଘେରି ବସନ୍ତି । ଗଞ୍ଜେଇ ଚିଲମରୁ ଦମେ ଟାଣି ଜମ୍ବୁ ପହିଲୁ ଗୋଟାଏ ଗଲା ଖଙ୍କାର ମାରେ, ଶ୍ରୋତାମାନେ ବୁଝି ପାରନ୍ତି ଯେ ଗପ ଆରମ୍ଭ ହେବ ।

ଥରେ ଗୋଟାଏ ପୋଖତ୍ତ ମଡ଼ା ତାହା ଭିତ ଫେଲିଲାବେଳେ ମୁକ୍ତାଙ୍କର ପାଖ ଦୋକାନଥିଆ ଆମ୍ବଗଛ ତାହରେ ବସି ଗୋଟାଏ ପିଚାଶୁଣୀ କମିତି ଏକୁଟିଆ ଜାଲି ତା' ପିଲାକୁ ସେଇଥିଲା—ତାହା ଏକ ନିପୁଣ ଚମତ୍କାର ଭଳି ଜମ୍ବୁ ବର୍ଣ୍ଣନା କରିଯାଏ । ଶ୍ରୋତାମାନେ ଡରରେ ଟିକିଏ କାକଜିକ ହୋଇ କାନ୍ଥକୁ ଲଗି ବସନ୍ତି ।

ଏହିପରି ଭାବରେ ସେଇ ଶ୍ରେଷ୍ଠ ବ୍ରାହ୍ମଣ ଶାସନଟିରେ ଜମ୍ବୁ ଢଆଙ୍କର ଜୀବନ କଟେ ।

ଅଗ୍ରହଣମାସ ସଞ୍ଜ । ସନ୍ଧ୍ୟାନେଳୁ କମିତି ଟିକିଏ ମେଘୁଆ ହୋଇଛି । ଢଆଙ୍କର ମୁଣ୍ଡଟା ଭାରି ବିନ୍ଧୁଥାଏ ନା କ'ଣ, ସେ ଦୁଇ କାନ ପାଖ କପାଳରେ ଟିପେ ଲେଖାଏଁ କଲିଚୂନ ବୋଳି ମୁଣ୍ଡରେ କମ୍ପୋଟର ଗୁଡ଼ାଇ ଦାଣ୍ଡପଟ ଗୁଡ଼ିଆ ଉପରେ ହୁତେଇ ଶୁଣୁଥିଲା ।

ଗାଆଁ ଭିତରେ କାନ୍ଦଣା ଶୁଣାଗଲା । ଆଉ ସାହି ଦୋକାନରୁ ପାନ, ଗୁଆଗୁଣ୍ଡି ଧରି କିଏ ଜଣେ ବାହୁଡ଼ୁଥିଲା । ସେ ଖବର ଦେଲା ଯେ ଜଟିଆ ମା ବୁଢ଼ୀର ବୋହୂଟି ମରିଯାଇଚି ।

ହୁହୁ ହୁହୁ ଗାଆଁ ଗୋଟାକରେ ହୁରେଇ ପଡ଼ିଗଲା । ଜମ୍ବୁ ଢଆଙ୍କ ବ ପଇସା ରୋଜଗାର ହେବ ଭାବି ମନେ ମନେ ଖୁସିଟାଏ ହେଲା ।

କେତେ ଲୋକ ଆସି କେତେ କଥା କହିଗଲେ । ସାହି ମାଇପେ ବାରକଥା ଫୁସ୍‌ଫାସ୍ ହେଲେ । କିଏସେ କହିଲା, 'ପାପଗର୍ଭ ହୋଇଥିଲା,' ଅନ୍ୟ କିଏ କହିଲା 'ପେଟ ଭଙ୍ଗେଇବାପାଇଁ କ'ଣ ଔଷଧ ମହୌଷଧ ଖାଇଥିଲା—ବିଷ ଚଢ଼ିଯାଇ ଦେହ ଭରିଗଲା ।

ଜମ୍ବୁଢଆଙ୍କ ଘୁମ୍ ହୋଇ ସବୁ ଶୁଣିଲା, ମୁହଁ ବଙ୍କେଇ ଦେଲା । ଜାତିରେ ଅଟକ ହେବା ଭୟରେ ସେ ଏଡ଼େ ବଡ଼ ରୋଜଗାରର ସବୁ ଆଶା ଛାଡ଼ିଦେଲା ।

ଜଟିଆମା ବୁଢ଼ୀର ସଂସାରରେ କେହି ନାହିଁ—ଶାଶୁ ବୋହୂ ଦି'ଜଣ । ପୁଅଣି ହେବାର ମାସକ ପରେ ପୁଅ ଯାଇଥିଲା କଲିକତା—ଟଙ୍କା ରୋଜଗାର କରି

ଦେଖା ଶୁଣିବ ବୋଲି ! ଉନବର୍ଷ ହେଲାଣି କିଛି ଖୋଜଖବର ନାହିଁ । ପ୍ରଥମେ ଚଟି ଖଣ୍ଡେ ଖଣ୍ଡେ ଦେଉଥିଲା, କିନ୍ତୁ ବର୍ଷେ ହେଲା ସେତକ ବି ବନ୍ଦ । ଗାଆଁର କେତେକ କଲିକତା ଫେରନ୍ତା ବ୍ରାହ୍ମଣ ପୁଅଗ କହନ୍ତି ଯେ, ସେ କେଉଁଠି ଗୋଟାଏ ମାଇକିନିଆ ଧରି କଲିକତା ମାଟିଆ ବୁରୁଜରେ ରହୁଛି । ଘରେ ଥିଲା ଖାଲି ବୋହୂଟି । ଆଜି ସେ ବି ଗଲା, ସଙ୍ଗେ ସଙ୍ଗେ ବୁଢ଼ୀ ମୁଣ୍ଡରେ ଲଦିଦେଇ ଗଲା କାଳିକାଳିକୁ ଅପବାଦର ବୋଝ । ବୁଢ଼ୀ ବ୍ରାହ୍ମଣୀର ମୁଣ୍ଡରୁ ହାତ ଛାଡ଼ୁନାହିଁ ।

ତା'ର ଅବସ୍ଥା ସେ ଦିନ ଶାଆଣି ଗାଇଲେ ସରି ନ ଆନ୍ତା, କିନ୍ତୁ କେତେଜଣ ଗାଆଁର ମୁରବି ମଣିଷ ବାହାରି କଥାଟାକୁ ସମ୍ଭାଳି ନେଲେ । ବଡ଼ ବଡ଼ ମୁରବିମାନେ ବୋହୂକୁ ଆଗରୁ ଯାବତା କରି ନ ଥିବା ଯୋଗୁଁ ଜଟିଆମା'କୁ ଗୁଡ଼ାଏ ଗାଳିମନ୍ଦ ଦେଲେ ମଧ୍ୟ ଶେଷକୁ ଫଇସଲା କରିଦେଇ କହିଲେ, ଜଲଦି କେସ ଖତମ କରିଦେବାକୁ ହେବ । ନୋହିଲେ ଛୁଟିଆ ଥାନାରେ ଖବରଦେଲେ ଗୋଟାଶାସନ ନାଆଁରେ କଳଙ୍କ ରଟିବ, ସମସ୍ତେ ତ ପୁଣି ଝିଅ ବୋହୂ ଧରି ଘର କରିଛନ୍ତି ।

ଜଟିଆମା ବୁଢ଼ୀ ଦାନ୍ତରେ କୁଟା ଦେଇ ସମସ୍ତଙ୍କି କୋଟି ପ୍ରଣାମ କଲା । ତାକୁ ଏ ଘୋର ବିପଦରୁ ରକ୍ଷା କରିଥିବା ଯୋଗୁଁ ସମସ୍ତଙ୍କ ପାଖରେ କେତେ କୃତଜ୍ଞତା ଜଣାଇଲା ।

ମଡ଼ା କାଢେଇବା ପାଇଁ ଗାଆଁର ତିନି ଚାରିଜଣ ଭେଣ୍ଡିଆ ଆଗଭର ହୋଇ ବାହାରି ପଡ଼ିଲେ । ପାଲି ଦଉଡ଼ି ବଳା ହେଲା, କୋକେଇ ସଜଡ଼ା ହେଲା, କୁଳା, ଝାପି, ଶିକା, ଛାଞ୍ଚୁଣୀ, କାଠ ବାଉଁଶ ସବୁ ଆସି ଦାଣ୍ଡରେ ଥୁଆହେଲା । ମୁର୍ଦ୍ଦାରର ଦହ ମୁଣ୍ଡରେ ଲୁଗା ଗୁଡ଼ାଇ ସମସ୍ତେ ତାକୁ ଟେକି ଆଣି କୋକେଇରେ ବାନ୍ଧିଲେ । ମାତ୍ର ଜଣେ ପୁରୁଖା ମାଲିସ୍ତାଇ ନ ହେଲେ ନ ଚଳେ । ଅଧଘଣ୍ଟାକ ଭିତରେ କେସ ଖତମ ନ କଲେ ବିପଦର ଆଶଙ୍କା, ଥାନାବାବୁ ଖବର ପାଇବେ ତ ଗାଆଁଯାକ ସମସ୍ତେ ବନ୍ଧା ହୋଇଯିବେ । ଗାଆଁରେ ତ ଖରୁଆ ଲୋକର ଅଭାବ ନାହିଁ ।

ମୁରବିମାନେ କହିଲେ---'ଢିଆଡ଼ିଙ୍କି ଡାକ ।' ଢିଆଡ଼ି ନଗଲେ ଏଡ଼େ ବଡ଼ କାମ ସୁରୁଖୁରୁରେ ତୁଟିବ ନାହିଁ ।

ଜଗୁ ଢିଆଡ଼ି ପାଖକୁ ଡକରା ଗଲା, ମାତ୍ର ଜଗୁ ଢିଆଡ଼ି ଅମଙ୍ଗ । ସେ ଏକା ଜିଦ୍ ଧରି ବସିଲା । କହିଲା "ପାପଗର୍ଭ ହୋଇ ମରିଚି । ମୁଁ ସେଇଟାକୁ ଛୁଇଁବି ? ଅସଥି ଦୋସ୍ତରୁଣୀଟାକୁ ମୁଁ କାନ୍ଧରେ ବସେଇବି ?"

ସମସ୍ତେ ଫାଟିଫୁଟି ଗଲେ । ଜଗୁ ଅଚଳ, ଅଟଳ ।

ଶେଷରେ ଗାଆଁର ବୁଢା ବୁଢ଼ା ମୁରବିମାନେ ବହୁତ ବୁଝାବୋଲା କରିବାରୁ ଜଗୁ ଢଆଙ୍ଗ ମୁର୍ଦ୍ଦାର କାନ୍ଧେଇବାକୁ ରାଜି ହେଲା, ମାତ୍ର ପାଞ୍ଚଟଙ୍କା ନ ପାଇଲେ ସେ ଏତେବଡ଼ ପାପକର୍ମ କରିବ ନାହିଁ ବୋଲି ସଫା ଜଣାଇଦେଲା । କଟିଆ ମା ବୁଢ଼ୀର ସବୁଗାତ ଖୋଳା ହୋଇ ସାହା ଦାହାଣରୁ ତାହା କାଠ, କିରାସିନ, ଧୋବା ଭଣ୍ଡାରକୁ ନଅଣ୍ଟ । ଶେଷରେ କଥା ଛିଣ୍ଡିଲା ବୋହୂ ନାକଟିରେ ଯେଉଁ ସୁନା ଗୁଣାଟି ଅଛି, ସେଇଟାକୁ ଜଗୁଢଆଙ୍ଗ ପାଇବ ।

ଜଗୁ ଢଆଙ୍ଗ ଖୁସିହୋଇ ଡାକ ଛାଡ଼ିଲା 'ରାମ ନାମ ସତ୍ୟ ହେ ।'

ମଶାଣି ପଦା···ସନ୍‌ସନିଆ, ଅସ୍ଥି ହାଣ୍ଡି, କାଠ, ମଶିଣ୍ଡ ମୁଣ୍ଡ, ଲୁଗା, ଅଟିକା, ପୋଡ଼ା ଅଙ୍ଗାର ଭିତରେ ଗଦା ଗଦା ପାଉଁଶ ! ଚାରିଆଡ଼ୁ ଭାସି ଆସୁଚି ଗୋଟାଏ ବିକଟ ଆଇଁଷିଣିଆ ଗନ୍ଧ !

'ପଥଶ୍ରାଦ୍ଧ' ସରିଲା । ଜଗୁଢଆଙ୍ଗ ଗୋଟାଏ ମସ୍ତବଡ଼ ଚୁଲି ଖୋଳିଲା । ତା'ପରେ ମୁର୍ଦ୍ଦାରଟାକୁ ନେଇ କାଠ ଗଦା ଉପରେ ଚିତ୍‌କରି ଶୁଆଇ ଦେଇ ତା ମୁହଁରୁ ଲୁଗା କାଢ଼ିଦେଲା ।

ସୁ'ନା ଭରି ଓଜନର ସୁନା । ଲହୁନ ଆଲୁଅରେ ଜଗୁଢଆଙ୍ଗ ଦେଖିଲା ଗୁଣାଟା ମୁର୍ଦ୍ଦାରର ନାକ ଉପରେ ଟକ୍ ଟକ୍ କରୁଛି ।

ମେଘ କଟିଯାଇ ଆସ୍ତେ ଆସ୍ତେ ଜହ୍ନ ପଶୁଚି, ମୁର୍ଦ୍ଦାରର ଶେତା ଧଳା ମୁହଁ ଉପରେ ଜହ୍ନ ଆଲୁଅରେ ଝାପସା ଛାଇ ।

ସଙ୍ଗୀ ଲୋକମାନେ କହିଲେ, "ଜଲଦି ଜଲଦି କାମ ସାର । ପୁଲିସ ଆସିବ ତ ସବୁ ଭଣ୍ଡୁରୁ ହୋଇଯିବ ।"

ଜଗୁ ଗୁଣାଟାକୁ ନାକରୁ ଛିଣ୍ଡାଇ ଆଣିବାକୁ ହାତ ବଢ଼ାଇଲା । ସେ ଦେଖି-ପାରିଲା ଶ୍ରେଷ୍ଠ ବୋହୂଟିର ଫିକା ମୁହଁଟି ଜହ୍ନ ଆଲୁଅରେ ଗୋଟିଏ ଦରମଉଳା କଇଁଫୁଲ ପରି ଦେଖାଯାଉଚି । ତା ମୁହଁ ଚାରିପଟେ ଘେରି ରହିଛି ଗୋଟାଏ କଳା କଳା ଲୁଛୁଲୁଛିଆ ବାଳର ଜଙ୍ଗଲ । ଠିକ୍ ଯେମିତି ଆକାଶର ଚାନ୍ଦ ପଛଆଡ଼େ ଜମି ରହିଚି କଳା ମେଘର ବଦଳିଆ ଛାଇ ।

ବୋହୂଟିର ମୁହଁ ଉପରେ ପହଁରି ପହଁରି ଖେଳୁଛି, ମଉଳା ଫୁଲର ଲାବଣ୍ୟ !! ତାର ଅଲରା ସଲରା ବାଳଗୁଡ଼ିକ ଉପରେ ଜହ୍ନ ଆଲୁଅ କହୁଛି ଝିଙ୍ଗି ଝିଙ୍ଗି ନୋଟିଯାଉଚି ।

ଜଗୁ ହାତ ଫେରାଇ ଆଣିଲା । ତା' ପରେ ସେ ଅନାଇଲା ଆକାଶର ଫିକା ଜହ୍ନଟା ଆଡ଼କୁ ।

ଜଗୁ ଇମିତି ଅନେକ ମୁର୍ଦ୍ଦାର ପୋଡ଼ିଛି । କିନ୍ତୁ କେବେହେଲେ ଦିନେ ସେ ମନ ଭିତରେ ଇମିତି ବଡ଼ ଅନୁଶୋଚନା କରିନାହିଁ । ଏଇ ଶ୍ରେଷ୍ଠ ସୁନ୍ଦର ମୂର୍ତ୍ତିଟିକୁ ଅସୁନ୍ଦର କରି ଦୁନିଆ ଗୁଣାଟାକୁ କାଢ଼ି ଆଣିବାକୁ ତାର ହାତ ଚଳିଲା ନାହିଁ । ବୋହୂଟିର ନାକଟି ଉପରେ ସେ ଗୁଣାଟା ତା' ଆଖିରେ ଖୁବ ଚମତ୍କାର ଦେଖାଯାଉଥିଲା । ସେ ଏହି ନାକଟି ସମ୍ବନ୍ଧରେ କେତେ କଣ ମନ ଭିତରେ ଭାବିଯାଇଥିଲା ।

ଏହି ସମୟରେ ଜଗୁର ମନେପଡ଼ିଲା, ଆଉ କିଛି ଦିନ ଯାଇଥିଲେ ବୋହୂଟି ହୁଏତ ହୋଇଥାନ୍ତା, ଗୋଟିଏ ମାଆ । ଆଉ ହୁଏତ କେତେ କ'ଣ ସେ ହୋଇ ପାରିଥାନ୍ତା, କିନ୍ତୁ କିଛି ସେ ହୋଇପାରିଲା ନାହିଁ ।

କାହାର ଦୋଷ ?

ଚୁପି ଚୁପିକା ଜହ୍ନ ଆଲୁଅର ଅସରନ୍ତ ସମୁଦ୍ର ମଝିରେ ନିଶୂନ ମଶାଣି ପଦାର ଲଙ୍ଗଳା ବୁକୁ ଉପରେ ଶୋଇଥିଲା ଗୋଟିଏ ଫରଫୁଟିଲା ନାରୀ, ଏକୁଟିଆ !!! ବାସ୍ତବିକ ନିତ ଏକୁଟିଆ ସେ ମଡ଼ାବୁହା ଜଗୁ ଉଆଡ଼ି ତାକୁଇ ନିରେଖି ନିରେଖି ଦେଖୁଥିଲା । ତାର ଅଶିକ୍ଷିତ ଗାଉଁଲି ମନ ନିଜ ଭାଷାରେ ଭାବୁଥିଲା··· ବାସ୍ତବିକ ଭାରି ଏକୁଟିଆ ସେ, ଖାଲି ଆଜି ନୁହେଁ, ଜୀବନସାରା ଧରି ସେ ଇମିତି ଏକାକୀ । ଏଇ ନିରୁତିଆ ଉଦ୍ଧସପଟିଆ ଏକଘରକିଆ ଜୀବନକୁ ବଦଳାଇ ଟିକିଏ ଅନ୍ୟପ୍ରକାର କରି ଦାମ୍ପତ୍ୟର ସ୍ୱାଦ ଅନୁଭବ କରିବାକୁ ଯାଇ ସେ ଆଜି ହୁଏତ ହୋଇଛି ମଶାଣିର ମଡ଼ା ! ବୋହୂଟିର ମାଉଁସିଆ ମୁହଁ ଭିତରେ ସେ ଦେଖିପାରିଲା ଅନେକ ଦିନର ବଞ୍ଚିବାର କ୍ଷୁଧା ।

ଜଗୁକୁ ଡେରି କରୁଥିବାର ଦେଖି ସଙ୍ଗୀ ମାଲଭାଇମାନେ ବିରକ୍ତ ହେଲେ । ଧମକ ଦେଇ କହିଲେ—"ତୁ ଇମିତି ଡେରିକଲେ ଆମେ ମୁର୍ଦ୍ଦାର ଫର୍ଦ୍ଦାର ଗୁଡ଼ ପକେଇପାରିବୁ । ପୁଲିସ ଆସିଲେ ତ କିଏ ଦାୟୀ ହେବ ? ନେ···ଗୁଣାଟା କାହାର କରି ନେ । ନୋହିଲେ ଆମେ ନିଆଁ ଲଗାଇଦେବୁ । ଗୁଣାଟା ନେବୁନେବୁ ବୋଲି ତ ମରିଯାଉଥିଲୁ, ଇଲଟେ ଇମିତି ହାତ ଚଳୁନାହିଁ କିଆଁ ?"

ଜଗୁ ଉଆଡ଼ର ସ୍ୱପ୍ନ ଭାଙ୍ଗିଗଲା । ସେ ବଡ଼ ଲଜ୍ଜିତ ବୋଧକଲା । ତଥାପି ଭିତରେ ଦୁର୍ବଳତାକୁ ଲୁଚି ରଖିବା ପାଇଁ ସେ ବାହାରେ ପ୍ରକାଶ କଲା—

"ଛି ! ଛି ! ମୁର୍ଦ୍ଦାର ଗୁଣାଟାକୁ ମୁଁ ଘରେ ଭର୍ତ୍ତି କରିବ ? ସେ ଜେ ପାପଗର୍ଭ—"

ସଙ୍ଗୀମାନେ ପଚାରିଲେ, "ତୁ କେବେ କରୁ ନାହିଁ ? ଆମେ ନିଆଁ ଲଗାଉଛୁଁ ?"

ଜଗୁ ଉଆଡ଼ ଅନ୍ୟମନସ୍କ ଭାବରେ ଜବାବ ଦେଲା 'ହଁ, ହଁ, ନିଆଁ ଲଗାଇ ଦିଅ । ଭଲ କରି ନିଆଁ ଲଗାଅ । ସବୁ ଜିନିଷ ଜଳିପୋଡ଼ି ପାଉଁଶ ହୋଇଯିବ ।"

ହୁରୁ ହୁରୁ ହୋଇ ନିଆଁ ଜଳି ଉଠିଲା । ନିଆଁର ଲକ୍ ଲକ୍ ଜିଭ ନିମିଷକେ ସବୁ ଗ୍ରାସି ନେବାପାଇଁ ବସିଥିଲା । ବୋଡୁ କିର ଗୋଡ଼ ମାରିଦିଆ ଦହଣ୍ଟା ନିଆଁରେ ସିଝି କଳା କାଠ ପଡ଼ିଗଲା, ତା'ପରେ ଫୋଟକା ହୋଇ ସେଥିରୁ ପରସ୍ତକୁ ପରସ୍ତ ଚୋପା ଛାଡ଼ିଗଲା ।

ଜଗୁ ଉଆଡ଼ ନିସ୍ତବ୍ଧ ହୋଇ ସେଇ ପୋଡ଼ିଯାଉଥିବା ଦହଣ୍ଟା ଆଡ଼କୁ ଚାହିଁଥିଲା ।

ଦୂର କୋଚିଲା ବୁଦା ଉପରେ ପେଚା, ଶାମୁଣା ଆଉ ଭୁଇଁ କୁକୁଡ଼ାମାନଙ୍କର ହାଟ ବସିଥିଲା । ଅନେକ ଦୂରରୁ ଧାନବିଲ ଆରପାରିରୁ ଏଇ ସମୟରେ ଭାସିଆସିଲା ଗୋଟିଏ ଅଶ୍ରୁ ଭିଜା ବଇଁଆର ଭାଙ୍ଗଫଟା ବୋବାଳି ରଡ଼ି ।

ଅଗ୍ନି—ଅଙ୍ଗାର— ହାଡ଼, ପାଉଁଶ, ଅଙ୍ଗାର । ଜୁଇ ଭିତରୁ କମିତ ଗୋଟାଏ ପଚା ପୋଡ଼ା ଗନ୍ଧ ପବନରେ ଭାସି ଆସି ଚାରିଆଡ଼େ ବ୍ୟାପ୍ତ ହୋଇଗଲା ।

ସଙ୍ଗୀ ଭାଇମାନେ ଜଗୁକୁ ଉଦ୍ଦେଶ୍ୟ କରି କହିଲେ "ତୁ ସେଇ ଦୋସ୍ଵରୁଣୀଟାର ଅଳଙ୍କାର ଗୁଡ଼ାକ ତୋର ପିଲାଛୁଆ ଘରେ ଭର୍ତ୍ତି ନ କରି ଭାରି ଭଲ କରିଚୁ ଭାଇ । ବଡ଼ ଅମଙ୍ଗଳ ହୋଇଥାନ୍ତା ତୋର । ଦେଖିଲୁ କେମିତ ଛଳବଳ ହୋଇ ମଲା ? ନିଜ ପେଟର ପିଲାଙ୍କୁ ଯେ ମାରିବାକୁ ଯାଉଥିଲା, ସେ କେ ସେ ମରନ୍ତା ନାହିଁ ? ଧର୍ମ କ'ଣ ନାହିଁ ?"

ସେଇ ଜଳନ୍ତା ପାଉଁଶ ଭିତରେ ଆଖି ବୁଜାଇ ବୁଜାଇ ବିରକ୍ତ ହୋଇ ଜଗୁ କହିଲା—"ଆଉ, ଥାଉ, ଅନ୍ୟକୁ ବିଚାର କର ନାହିଁ । ମଣିଷ କଣ ମଣିଷକୁ ଠିକ୍ ବୁଝିପାରେ ?"



# ଶ୍ରୀକୃଷ୍ଣଙ୍କ ଶେଷ ହସ

● ଶ୍ରୀ ସୁରେନ୍ଦ୍ର ମହାନ୍ତି

ସେଦିନ ଯେପରି ମହାଭାରତ ବିୟୋଗାନ୍ତ ନାଟକର ଶେଷ ଦୃଶ୍ୟ ଦେଖିନିବା ପାଇଁ ଇନ୍ଦ୍ରପ୍ରସ୍ଥର ଗିରିମାଳା ନେପଥ୍ୟରେ, ଅସ୍ତାଚଳ ପଥରେ, ସର୍ବଦ୍ରଷ୍ଟା ଦିବାକର ଅରୁଣ-ବାହିତ-ରଥ ଦଣ୍ଡେ ଅଟକାଇ ଦେଇଥିଲେ ।

ମହାଭାରତ-ମହାସମର ପରେ କୁରୁକ୍ଷେତ୍ର ପରିତ୍ୟକ୍ତ । ଧ୍ୱଜ ଓ କଳସ-ଶୋଭିତ, ମୁକ୍ତା ଓ ମଣିଝର ବିମଣ୍ଡିତ, କୌରବପକ୍ଷର ଭଗ୍ନ ରଥ ପୁଣି ତୂଣ, ଧନୁ ଓ ନାରାଚଶୋଭିତ, ଏକାଦଶ ଅକ୍ଷୌହିଣୀ ଯୋଦ୍ଧୃବର୍ଗଙ୍କର ଶବରାଶି ଦ୍ୱାଦଶ ଯୋଜନ ବିସ୍ତାର କରି, ଶୋଣିତ-ପଙ୍କ ମଧ୍ୟରେ ବିକ୍ଷିପ୍ତ ହୋଇ ପଡ଼ିଅଛି । ସେହି ମହାଶ୍ମଶାନର ଶବସ୍ତୂପ-ମଧ୍ୟରେ ରୋରୁଦ୍ୟମାନ ଅସମ୍ବୃତବସନା ଓ ଅବିନ୍ୟସ୍ତ କୁନ୍ତଳା, ଦୁର୍ଯ୍ୟୋଧନଙ୍କ ମହିଷୀ ଭାନୁମତୀ ଓ ଅନ୍ୟ କୌରବ କୁଳ-ନାରୀମାନେ ନିଜ ନିଜର ପ୍ରିୟ ସ୍ୱଜନବର୍ଗଙ୍କୁ ଅନ୍ୱେଷଣ କରୁଛନ୍ତି । ସେମାନଙ୍କ ମର୍ମାନ୍ତିକ କ୍ରନ୍ଦନ, ଶ୍ୱାନ, ଶିବା ଓ ଶକୁନମାନଙ୍କର ନାରକୀୟ ରଡ଼ିକୁ ସୁଦ୍ଧା ବେଳେ ବେଳେ ନିମଜ୍ଜିତ କରିଦେଉଅଛି ।

ଶତ ଶତ ଚିତାନଳର ଦୀପ୍ତ ଚପଳତା, ମୃତ୍ୟୁର ଅଞ୍ଚଳର ଗାମ୍ଭୀର୍ଯ୍ୟ ମଧ୍ୟରେ ପ୍ରଶମିତ ହୋଇଅଛି । ଅଶ୍ୱମାନଙ୍କର ହ୍ରେଷାରବ, ମତ୍ତ ଦନ୍ତୀବଳମାନଙ୍କର ବୃଂହିତ, ଯୋଦ୍ଧୃବର୍ଗମାନଙ୍କର ପ୍ରମତ୍ତ ଆସ୍ଫାଳନ, ମୁଷ୍ଟିରେ ଗଦାଘାତରେ ସବୁ ନୀରବ ହୋଇଅଛି । ସେହି କ୍ରନ୍ଦନ ଓ ଶିବାରଡ଼ି-ମୁଖରିତ ମହାଶ୍ମଶାନ ଉପରେ ଚକ୍ରାକାରରେ ଉଡ଼ି ବୁଲୁଥିବା, ପର୍ଯ୍ୟୁଷିତ ମାଂସଲୋଭୀ ଅଗଣିତ ଶକୁନଙ୍କର ସଞ୍ଚାଳିତ ପକ୍ଷ କରାଳର ଛତ୍ରାପରି ବିସ୍ତାରିତ ହୋଇଅଛି ।

ଇନ୍ଦ୍ରପ୍ରସ୍ଥରେ ଧୃତରାଷ୍ଟ୍ରଙ୍କର ପ୍ରାସାଦ ନୀରବ ଓ ନିର୍ଜନ । ବେଳେବେଳେ ସଞ୍ଜୟ ଓ ବିଦୁରଙ୍କର ଶାନ୍ତ ଧୀର ପଦଶବ୍ଦ, ଧୃତରାଷ୍ଟ୍ରଙ୍କର ମର୍ମଭେଦୀ ଦୀର୍ଘଶ୍ୱାସ ଓ ଗାନ୍ଧାରୀଙ୍କର ଅସ୍ଫୁଟ କ୍ରନ୍ଦନର ଭାରାକ୍ରାନ୍ତ ନୀରବତାକୁ ଘନୀଭୂତ କରିଦେଉଅଛି ।

---

* ଶାରଳା ମହାଭାରତ 'ନାରୀପର୍ବ'ରେ ବର୍ଣ୍ଣିତ ଗୋଟିଏ ଉପାଖ୍ୟାନ ଅବଲମ୍ବନରେ ଏହି ଗଳ୍ପଟି ଲିଖିତ ହୋଇଅଛି । ଏହା ସଂସ୍କୃତ ମହାଭାରତରେ ନାହିଁ ଓ ସଂସ୍କୃତ ମହାଭାରତରୁ ଶାରଳା ମହାଭାରତର ଏହା ଏକ ବିଷୟଗତ ବୈଷମ୍ୟ ।— ଲେଖକ

ଧୃତରାଷ୍ଟ୍ର ଜନ୍ମାନ୍ଧ । ତେଣୁ କୁରୁକ୍ଷେତ୍ରର ମହାଶ୍ମଶାନରେ, ମହାନିଦ୍ରାର ଧୂଳିଶେଯାରେ, ମାନଗୋବିନ୍ଦ ଦୁର୍ଯ୍ୟୋଧନ ସମେତ ଶତପୁତ୍ର, କର୍ଣ୍ଣ, ଶଲ୍ୟ, ଦ୍ରୋଣ ଭୂରିଶ୍ରବା-ପ୍ରମୁଖ ସଖା ଓ ସୋଦରମାନଙ୍କୁ ଶେଷବାର ଦେଖି ଆସିବାପାଇଁ ତାଙ୍କର ବ୍ୟାକୁଳତା, ଉତ୍କଣ୍ଠା, [illegible] ଓ ଦୀର୍ଘଶ୍ୱାସ କୌରବ ପ୍ରାସାଦର ଛାୟାଚ୍ଛନ୍ନ ଭିତ୍ତି ପ୍ରସ୍ତର ଦେହରେ ବାଧାପାଇ ବାରମ୍ବାର ନୀରବ ହେଉଅଛି ।

ମାତ୍ର ଗାନ୍ଧାରୀ ଦୁଇ ଆଖିରୁ ଅନ୍ଧ ପଟ୍ଟିକାର ଆବରଣ ଫିଙ୍ଗିଦେଇ, ମହାନିଦ୍ରାରେ ଶାୟିତ ଶତ ପୁତ୍ରଙ୍କୁ ପ୍ରଥମ ଓ ଶେଷବାର ଥରେ ଦେଖିବାପାଇଁ ଉତ୍କଣ୍ଠିତ ହୋଇପଡ଼ିଛନ୍ତି; କିନ୍ତୁ ଅନ୍ଧ ଧୃତରାଷ୍ଟ୍ରଙ୍କ ପାଣିଗ୍ରହଣ ବେଳେ ସତୀତ୍ୱର ପରମ ନିଷ୍ଠାର ବ୍ରତଚାରିଣୀ ପରି ଗାନ୍ଧାରୀ ଦୁଇ ଆଖିରେ ଅନ୍ଧପଟ୍ଟିକାର ଯେଉଁ ଆବରଣ ବାନ୍ଧିଥିଲେ, ତାହାର ବନ୍ଧନ ଦୁଶ୍ଛେଦ୍ୟ ଓ ଗ୍ରନ୍ଥି ଦୁର୍ଭେଦ୍ୟ । ତା ନ ହେଲେ ସତୀ ଧର୍ମର ସବୁ ଅହଙ୍କାର ଭୁଲି ଆଜି ସେ ଅନ୍ଧପଟ୍ଟିକାକୁ ଏକ ତୁଚ୍ଛ ପ୍ରତିବନ୍ଧକ ରୂପେ, ପଥର ଧୂଳିରେ ଫିଙ୍ଗିଦେବାପାଇଁ ସେ ଟିକେ ହେଲେ କୁଣ୍ଠିତା ନୁହନ୍ତି ।

ଦୁର୍ଯ୍ୟୋଧନ, ଦୁଃଶାସନ, ଦୁର୍ଜୟ, ଦୁରନ୍ତ, ଦୁର୍ଗମ, ଦୁରମ, ଦୁର୍ଦ୍ଧର, ଦୁର୍ବଳକ ପ୍ରମୁଖ ଶତ ପୁତ୍ରର ଜନନୀ, ମାତୃତ୍ୱ-ଗରବିନୀ ସୋମବଂଶର ପୂଜନୀୟା ଗାନ୍ଧାରୀ ! କର୍ପୂର-ରେଣୁ ସିଞ୍ଚିତ, ରତ୍ନ-ତଳ୍ପରେ ସୁପ୍ତ ଯେଉଁମାନଙ୍କୁ ନିଦ୍ରା ସ୍ପର୍ଶ କରୁ ନଥିଲା, ଆଜି ସେମାନେ କୁରୁକ୍ଷେତ୍ରରେ ଶୋଣିତ କର୍ଦ୍ଦମରେ ମହାନିଦ୍ରାରେ ଅଚେତନ ।

ସେମାନଙ୍କ ଶବରାଶି ଉପରେ ଶ୍ୱାନ, ଶିବା ଓ ଶକୁନମାନଙ୍କର ଅଶ୍ଳୀଳ ଚିତ୍କାର ଦ୍ୱିଗୁଣ ରୌରବ ସୃଷ୍ଟି କରୁଅଛି ।

ଗୋଟିଏ ଶକୁନପଲର ବିକଟ ରଡ଼ିରେ ଗାନ୍ଧାରୀ ଆର୍ତ୍ତନାଦ କରି ଉଠିଲେ ।

ଅନ୍ଧ ପରି, ଆଶ୍ରୟପାଇଁ, ଶୂନ୍ୟରେ ଶୁଷ୍କ ଚର୍ମାବୃତ୍ତ ଦୁଇ ଶିଥିଳ ବାହୁ ଟେକି, ଗାନ୍ଧାରୀ ଅସହାୟ କଣ୍ଠରେ ଚିତ୍କାର କଲେ···ବିଦୁର, ସଞ୍ଜୟ !”

ପରିତ୍ୟକ୍ତ କୌରବ ପ୍ରାସାଦର ପୈଶାଚିକ ନୀରବତା ମଧ୍ୟରେ ଗାନ୍ଧାରୀଙ୍କ ଆକୁଳ ଆହ୍ୱାନ ପ୍ରତିଧ୍ୱନି ଉଠାଇ ପୁଣି ନୀରବ ହୋଇଗଲା ।

× × × ×

ନିଷ୍ଫଳ ଅହଙ୍କାର ଓ ଅଭିମାନରେ ଦୁଇ କମ୍ପିତ ବାହୁ ସ୍ଫୀତକରି ଉର୍ଦ୍ଧ୍ୱକୁ ଟେକି, ଅନ୍ଧ ଧୃତରାଷ୍ଟ୍ର ବିଦୁରଙ୍କ ସମ୍ମୁଖରେ ଆସ୍ଫାଳନ କରୁଥିଲେ···“କୁଳଘାତ

ନାହିଁ ବିଦୁର, ଆଜି ପୁଣି ଏହି ଦୁଇ ବାହୁରେ କୁରୁକୁଳଦ୍ରୋହୀ ଭୀମ ସମେତ ପାଣ୍ଡବ ପଞ୍ଚଭ୍ରାତାଙ୍କୁ ଚୂର୍ଣ୍ଣବିଚୂର୍ଣ୍ଣ କରିଦେବାର ଶକ୍ତି ରହିଅଛି ।"

ଧୃତରାଷ୍ଟ୍ର କୌରବ-ସିଂହାସନ ଉପରେ ପ୍ରଚଣ୍ଡ ଉଦ୍ଧାସାରେ ଶସ୍ତ୍ରାହତ ପଶୁପରି ଗର୍ଜନ କରିଉଠିଲେ । ତାଙ୍କ କୁଞ୍ଚିତ ଓ ରେଖାଙ୍କିତ ମୁଖମଣ୍ଡଳରେ ଶିଥିଳ ମାଂସପେଶୀମାନେ ଏକ କାଠିନ୍ୟରେ ନିଷ୍ଠୁର ହୋଇଗଲା । ସୁପ୍ତ ଆଗ୍ନେୟଗିରିର ଅନ୍ଧକାର ବିବର ପରି ତାଙ୍କର ଦୁଇ ଦୃଷ୍ଟିହୀନ ଅନ୍ଧଚକ୍ଷୁରେ ଅଗ୍ନ୍ୟୁଦ୍‌ଗାର ଯେପରି ଉଦ୍ଭାସିତ କରିଉଠିଲା ।

ବିଦୁର ଶାନ୍ତ କଣ୍ଠରେ କହିଲେ—"ମହାରାଜ, ଧୃତରାଷ୍ଟ୍ରମାନେ ଚିରକାଳ ଅନ୍ଧ । ସିଂହାସନର ସ୍ୱର୍ଣ୍ଣ ଜ୍ୟୋତିରେ କାଲେ କାଲେ ସେମାନେ ଅନ୍ଧ ହୋଇଛନ୍ତି । ଚକ୍ଷୁହୀନତା ଏକମାତ୍ର ଦୃଷ୍ଟି ନୁହେଁ । ପାଣ୍ଡବ ପଞ୍ଚଭ୍ରାତାଙ୍କୁ ସମୂଳେ ବିନାଶ କରିବା ପାଇଁ ଜତୁଗୃହଦାହର ଷଡ଼ଯନ୍ତ୍ର କଲେ, ଭୀମସେନଙ୍କୁ ବିଷମୋଦକ ଦେଲେ, ବ୍ୟାସ ସରୋବରରେ ଆତ୍ମଗୋପନ କରିଥିବା ଦ୍ରୌପଦୀଙ୍କ ପଞ୍ଚପୁତ୍ରଙ୍କୁ ମୃଗୟା-ବିଳାସରେ ହତ୍ୟା କଲେ, କୁରୁସଭା ତଳେ କୁଳବଧୂ ଦ୍ରୌପଦୀଙ୍କୁ ବିବସନ କଲେ, ପୁଣି ସାମାନ୍ୟ ପାଞ୍ଚଖଣ୍ଡ ଗ୍ରାମପାଇଁ ଶ୍ରୀକୃଷ୍ଣଙ୍କ ଦୌତ୍ୟର ଉତ୍ତରରେ "ସୂଚ୍ୟଗ୍ରେ ପରିମିତ ଭୂମି ଦେବୁ ନାହିଁ" ବୋଲି ଦୁର୍ଯ୍ୟୋଧନ ଆସ୍ଫାଳନ କଲେ, ପୂର୍ବଦୃଷ୍ଟିରେ ଆପଣ ଯଦି ଏ ପରିଣତି କଳନା କରିଥାନ୍ତେ, ତା ହେଲେ ଅନୁଶୋଚନାରେ ଆଜି ଆପଣ ଏପରି ତିଳେ ତିଳେ ଦଗ୍ଧୀଭୂତ ହେଉ ନ ଥାନ୍ତେ ; କିନ୍ତୁ ଧୃତରାଷ୍ଟ୍ରମାନେ ଚିରକାଳ ହିଁ ଅନ୍ଧ ।"

ଧୃତରାଷ୍ଟ୍ର କହିଲେ···'ମାତ୍ର ଭୀଷ୍ମ, କର୍ଣ୍ଣ, ଦ୍ରୋଣ ପରି ମହାବୀରମାନେ, ପାଣ୍ଡବମାନଙ୍କଦ୍ୱାରା ଏପରି ପରାଜିତ ହେବେ, ତାହା ତ ମୁଁ ଆଶଙ୍କା କରି ନଥିଲି ବିଦୁର !'

ବିଦୁର କହିଲେ···'ସେଥିପାଇଁ ତ ମୁଁ କହେ, ଧୃତରାଷ୍ଟ୍ରମାନେ ଚିରକାଳ ଅନ୍ଧ ! ନିର୍ଯ୍ୟାତିତ, ନିପୀଡ଼ିତ, ଆର୍ତ୍ତ ଓ ବଞ୍ଚିତର ଦାବୀ, ଆପାତଦୃଷ୍ଟିରେ ଯେତେ ଦୁର୍ବଳ ହେଲେ ପୁଣି, ଅକ୍ଷୌହିଣୀ ସେନାର ରଣପ୍ରସ୍ତୁତ ଓ ଦିଗ୍ୱିଜୟୀ ଯୋଦ୍ଧାମାନଙ୍କର ଧନୁଷ୍ଟଙ୍କାର ତାହାକୁ ବିଡ଼ମ୍ବିତ କରିପାରିବ ନାହିଁ । କେତେ ଦର୍ପିତ ଇନ୍ଦ୍ରତ୍ତ୍ୱ, କେତେ ମଦମତ୍ତ ହସ୍ତିନା, କେତେ ଅହଙ୍କାରୀ ବାରୁଣା ଇତିହାସରେ ଏହିପରି ବାରମ୍ବାର ଭୂଲୁଣ୍ଠିତ ହେବ ! ···ମହାରାଜ, ମହାଶକ୍ତିରେ ଶୌର୍ଯ୍ୟ ଓ ସ୍ଥିତି କ୍ଷମତାରେ ରହିବ, ଦାମ୍ଭିକତାରେ ରହିବ ନାହିଁ; ରହିବ ଲାଞ୍ଛିତ, ବଞ୍ଚିତ ଓ ଅପମାନିତକୁ ତା'ର ଯଥାର୍ଥ ଦାବୀରେ ପ୍ରତିଷ୍ଠିତ କରିବାରେ: ରହିବ ଔଦାର୍ଯ୍ୟରେ; କରୁଣାରେ ଦାକ୍ଷିଣ୍ୟରେ ।'

ଇନ୍ଦ୍ରପ୍ରସ୍ଥର ଆକାଶରେ କାଳବୈଶାଖୀର ଘୂର୍ଣ୍ଣୀ ଯେପରି ଧୃତରାଷ୍ଟ୍ରଙ୍କ କଣ୍ଠରେ ଗର୍ଜ୍ଜନ କରିଉଠିଲା । ବିଦୁରଙ୍କ ପ୍ରତି ପ୍ରଚଣ୍ଡ କ୍ରୋଧରେ ଚିତ୍କାର କରି ଧୃତରାଷ୍ଟ୍ର କହିଲେ 'ତୁମେ ନା ବିଦୁର, କୌରବର ଅନ୍ନଭୋଜୀ ! କୌରବର ଔଦାର୍ଯ୍ୟରେ, କରୁଣାରେ, ଦାକ୍ଷିଣ୍ୟରେ ତୁମେ ନା ଲାଳିତପାଳିତ ଓ ବର୍ଦ୍ଧିତ ! ଆଜି ସେହି କୌରବମାନଙ୍କ ଚରମ ଦୁର୍ଦ୍ଦିନରେ; ଏହି ତୁମର ପ୍ରତିଦାନ ? କୌରବର ଅନ୍ନର ପ୍ରତିଦାନରେ, ତୁମ କଣ୍ଠରେ ସମବେଦନାର ବାଣୀ ଫୁଟିବା ନାହିଁ !'

ବିଦୁର ଅବିଚଳିତ କଣ୍ଠରେ କହିଲେ···'କିନ୍ତୁ ସତ୍ୟ ଯେତେ କଠୋର ହେଲେ ବି ତେବେ ତାହାର ସମ୍ମୁଖୀନ ହେବାପାଇଁ ପ୍ରସ୍ତୁତ !'

ଧୃତରାଷ୍ଟ୍ର ଚିତ୍କାର କରି ଉଠିଲେ···'କିନ୍ତୁ ସାମାନ୍ୟ ରାଜ୍ୟପାଇଁ, ପାଣ୍ଡବମାନଙ୍କଦ୍ୱାରା ସର୍ବନାଶ, କୁଳ ନାଶ– ଏହି କ'ଣ ତୁମର ସତ୍ୟ ବିଦୁର ? ମୁଁ ବା କିପରି ଭୁଲିବି କହ, ବିଦୁର ! ଆଜି ସୋମବଂଶର ଦୀପଶିଖା ଗୋଟିକ ପରେ ଗୋଟିଏ ନିର୍ବାପିତ ହୋଇଅଛି । ଅନ୍ଧ ଧୃତରାଷ୍ଟ୍ରର ଅନ୍ଧ ତମିସ୍ରାପରି; ଏହାପରେ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ, ସବୁ ନିରନ୍ଧ୍ର, ସୂଚୀଭେଦ୍ୟ, ନିଷ୍ଠୁର ଅନ୍ଧକାର ।'

ବିଦୁର ଶାନ୍ତ କଣ୍ଠରେ ଉତ୍ତର ଦେଲେ—'କର୍ମଫଳର ଅଲଙ୍ଘ୍ୟ ପରିଣତି ରୂପେ ଏହାକୁ ଗ୍ରହଣ କରି ଶୋକସମ୍ବରଣ କରନ୍ତୁ ମହାରାଜ—ଶାନ୍ତି ଲାଭ କରିବେ । ଆପଣ କୁରୁକୁଳର ଅଗସ୍ତି ରୂପେ, କୌରବ-ସମୁଦ୍ର ନିଃଶେଷ କରି ଅଛନ୍ତି, ପାଣ୍ଡବମାନେ ତ ଗୋଷ୍ପଦ ସଦୃଶ ! ଆଉ କ୍ରୋଧାନଳରେ ପ୍ରଜ୍ଜ୍ୱଳିତ ହୋଇ ସେ କୂପକୁ ନିଃଶେଷ କରନ୍ତୁ ନାହିଁ ।'

ଏହି ସମୟରେ ଅନ୍ଧପଟ୍ଟିକାବୃତା, ଶୋକାକୁଳା ଗାନ୍ଧାରୀ ଉନ୍ମାଦିନୀ ପରି ସେଠାକୁ ଧାଇଁଆସି କହିଲେ—'ମହାରାଜ, ତେବେ ଆପଣଙ୍କପାଇଁ ମୁଁ ଆଖିରେ ବାନ୍ଧିଥିଲି ଏହି ଅନ୍ଧପଟ୍ଟିକା । ସେହି ବନ୍ଧନରେ ଦୁର୍ଭେଦ୍ୟ ଗ୍ରନ୍ଥି ଆଜି ଛିନ୍ନ କରିଦିଅନ୍ତୁ ମହାରାଜ ! ଶତପୁତ୍ରର ଜନନୀ ମୁଁ । ଜୀବନରେ ଯେଉଁମାନଙ୍କୁ ଦେଖି ନାହିଁ, ଆଜି ଅନ୍ତତଃ ମୃତ୍ୟୁର ଶେଷଶଯ୍ୟାରେ ସେମାନଙ୍କୁ ଦେଖି ନୟନର ଜ୍ୱାଳା ଶାନ୍ତକରେ !'

ଅନ୍ଧପଟ୍ଟିକାର ଗ୍ରନ୍ଥି ଛିନ୍ନ କରିବାର ନିଷ୍ଫଳ ଉଦ୍ୟମରେ, ଶିଥିଳ ଅଙ୍ଗୁଳିର ଶତ ନଖାଘାତରେ ଗାନ୍ଧାରୀଙ୍କର ଶୁଷ୍କଚର୍ମାବୃତ ମୁଖ ରକ୍ତାକ୍ତ ହୋଇ ପଡ଼ିଥିଲା । ଲୋତକ ଓ ଶୋଣିତର ଧାରା ଗାନ୍ଧାରୀଙ୍କ ମୁଖମଣ୍ଡଳକୁ ଅତ୍ୟନ୍ତ ଭୟଙ୍କର କରି ଦେଇଥିଲା ।

ଗାନ୍ଧାରୀ ଶୋକାପ୍ଲୁତ କଣ୍ଠରେ ପୁଣି ଚିତ୍କାର କରି ଉଠିଲେ ମହାରାଜ, ଆପଣଙ୍କପାଇଁ ଅନ୍ଧପଟ୍ଟିକାର ଆବରଣ ତଳେ ମୁଁ ଚିରଜୀବନ ଅନ୍ଧ ହୋଇ ଆସିଅଛି ଆଜି ମୋପାଇଁ ସେ ଆବରଣ ଉନ୍ମୋଚନ କରନ୍ତୁ, ମହାରାଜ !'

ଗାନ୍ଧାରୀଙ୍କର ଅନୁରୋଧରେ ଧୃତରାଷ୍ଟ୍ରଙ୍କ ମୁଖମଣ୍ଡଳ ଏକ କୃଷ୍ଣ ମେଘ ଖଣ୍ଡରେ ଯେପରି ଆଚ୍ଛନ୍ନ ହୋଇପଡ଼ିଲା । ଗାନ୍ଧାରୀ ଜାଣନ୍ତି ନାହିଁ, ମାତ୍ର ଧୃତରାଷ୍ଟ୍ର ଜାଣନ୍ତି, ଅନ୍ଧପଟି ଢାକୁଚି ଗାନ୍ଧାରୀଙ୍କ ଦୁଇ ଚକ୍ଷୁର ପୁଞ୍ଜୀଭୂତ ହୋଇ ରହିଅଛି ବର୍ଷର ଦାବାନଳ ! ଧୃତରାଷ୍ଟ୍ର ସୁଦ୍ଧା ସେଥିରେ ଭସ୍ମ ହୋଇଯିବେ ।

ଗାନ୍ଧାରୀଙ୍କୁ ସାନ୍ତ୍ୱନା ଦେଇ ବିଦୁର କହିଲେ—'ଶୋକ ସମ୍ବରଣ କରନ୍ତୁ ମହାଦେବି ! କାଏ କହେ ଆପଣ ପୁତ୍ରହୀନା ? ଅଗ୍ରପାଣ୍ଡବ ଯୁଧିଷ୍ଠିରଙ୍କର ଅଭିଷେକ ଘୋଷଣା ଚଳେ ଦୁର୍ଦ୍ଦିନ ଏବେ ସୁଦ୍ଧା ଜୀବନ୍ତ । ପୁଣି ପଞ୍ଚପାଣ୍ଡବ ତ ଆପଣଙ୍କୁ ଜନନୀ ତୁଲ୍ୟ ଭକ୍ତି କରନ୍ତି ।'

ଗାନ୍ଧାରୀ ଉନ୍ମାଦିନୀ ପରି ଚିତ୍କାର କରି ଉଠିଲେ—'ମୁଁ ଜାଣେ ମହାରାଜ ଆଉ ଏ ଅନ୍ଧପଟଳ ଉନ୍ମୋଚିତ ହେବ ନାହିଁ । ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଗାନ୍ଧାରୀର ଜୀବନ କେବଳ ଅମାବାସ୍ୟାର ନିରନ୍ଧ୍ର ନିଷ୍ଠୁର ଅନ୍ଧକାର ! ଗାନ୍ଧାରୀ ଯେପରି ବାତ୍ୟାବାହିତ ଗୋଟିଏ ଶୁଷ୍କପତ୍ର ପରି ଧୃତରାଷ୍ଟ୍ରଙ୍କ ସମ୍ମୁଖକୁ ଉଡ଼ି ଆସିଥିଲେ— ସେହିପରି ସେଠାରୁ ସ୍ଖଳିତ ପାଦରେ ଫେରିଗଲେ ।

ରଥ ପ୍ରସ୍ତୁତ । ଯୁଧିଷ୍ଠିର ଏକାକୀ ରଥରେ ଉପବେଶନ କରିବା ପାଇଁ ଉଦ୍ୟତ ହୋଇଥିଲେ, ଏହି ସମୟରେ ଶ୍ରୀକୃଷ୍ଣ ଦୁର୍ଦ୍ଦିନ ସହିତ ହଠାତ୍ ବିପରୀତ ଦିଗରୁ ଆସି ପଚାରିଲେ, 'ହସ୍ତିନାର ସିଂହାସନରେ ଆସନ୍ନ ଅଭିଷେକର ଉତ୍ସବ ମଧ୍ୟରେ ଏକାକୀ କେଉଁଆଡ଼େ ବାହାରିଲେ ଧର୍ମରାଜ ?

ଯୁଧିଷ୍ଠିର କହିଲେ--'ମାତା ଗାନ୍ଧାରୀ ମୋତେ ସ୍ମରଣ କରିଅଛନ୍ତି । ତାଙ୍କର ଦର୍ଶନ ପାଇଁ ବାହାରିଅଛି ।

ଶ୍ରୀକୃଷ୍ଣ କହିଲେ---'ବହୁକାଳୁ ଗାନ୍ଧାରୀଙ୍କ ସହିତ ମୋହର ମଧ୍ୟ ସାକ୍ଷାତ ହୋଇ ନାହିଁ । ତାହେଲେ ଚାଲନ୍ତୁ ଯୁଧିଷ୍ଠିର, ମୁଁ ଆପଣଙ୍କ ରଥ ଚଳାଇ ନେବି ।'

ଯୁଧିଷ୍ଠିର ଏ ପ୍ରକାର ଆକସ୍ମିକତାରେ ବିସ୍ମିତ ହୋଇ ପଚାରିଲେ –'ଏ ପୁଣି କି ନୂତନ ମାୟା, ମାୟାଧର ?

ଶ୍ରୀକୃଷ୍ଣ ସାରଥିର ସ୍ଥାନରେ ବସି ଯୁଧିଷ୍ଠିରଙ୍କୁ କହିଲେ 'ମହାଭାରତର ଜୈତ୍ରଯାତ୍ରା ପଥରେ ଯେ ପାଣ୍ଡବଙ୍କ ଜୟରଥ ବାହିଥିଲା, ତା'ର ଦକ୍ଷତାରେ କ'ଣ ଆପଣଙ୍କର ସନ୍ଦେହ ହେଉଛି, ଅଗ୍ରପାଣ୍ଡବ ?

ଯୁଧିଷ୍ଠିର ନୀରବ ରହିଲେ ।

ନାରାୟଣ ତରଦନ ଏହିପରି ପ୍ରହେଳିକାମୟ !

କୁରୁକ୍ଷେତ୍ରର ମହାଶ୍ମଶାନ ମଧ୍ୟରେ ମୃତ-ଶବସ୍ତୂପ ବୁଲି ସଞ୍ଜୟଙ୍କ ସହିତ ଗାନ୍ଧାରୀ ଶତପୁତ୍ରଙ୍କ ଶବ ସନ୍ଧାନ କରୁଥିଲେ । ଶିବା, ଶକୁନ ଓ ବାୟସଦଳଙ୍କୁ

ଦେଇ, ଗାନ୍ଧାରୀଙ୍କ ହସ୍ତ ଧରି, ସଞ୍ଜୟ ତାହାଙ୍କୁ ଆସନ୍ନ ସନ୍ଧ୍ୟାର ବିଷଣ୍ଣ ଗୋଧୂଳି ମଧ୍ୟରେ ପଥ କଢ଼ାଇ ନେଉଥିଲେ ।

ସଞ୍ଜୟ କହିଲେ—'ମହାଦେବି ! ଭୂତଳଶାୟୀ ହୋଇ ମହାନିଦ୍ରାରେ ଅଚେତନ ହୋଇ ପଡ଼ିଛନ୍ତି ଏଇ ପିତାମହ ଭୀଷ୍ମ । ମୁଖ ମଣ୍ଡଳରେ ତାଙ୍କର ଅନନ୍ତ ପ୍ରଶାନ୍ତି ।'

ଗାନ୍ଧାରୀ କହିଲେ—'ଜାଣେ ସଞ୍ଜୟ ସ୍ୱଇଚ୍ଛାରେ ସେ ପ୍ରାଣତ୍ୟାଗ କରିଅଛନ୍ତି । ତା ନହେଲେ ଜିତେନ୍ଦ୍ରିୟ ବଜ୍ରପ୍ରାଣ ଭୀଷ୍ମଙ୍କ ସମ୍ମୁଖରେ ପାଣ୍ଡବମାନେ ତ ତୃଣାଦପି କ୍ଷୁଦ୍ର ।'

ସଞ୍ଜୟ କହିଲେ···"ଆଉ ରଥ-ଚକ୍ରତଳେ ନିଷ୍ପେଷିତ ହୋଇପଡ଼ିଛନ୍ତି ବାହ୍ଲୀକ ବୀର ସୋମଦତ୍ତ, ମତ୍ତହସ୍ତୀର ଦନ୍ତାଘାତରେ ରକ୍ତାକ୍ତ ହୋଇପଡ଼ିଛନ୍ତି ଭୂରିଶ୍ରବା । ମହାଦେବି ! ଅର୍ଜୁନର ଶରଘାତରେ ଏଇ- ଭଗ୍ନଶାୟୀ ହୋଇ- ପଡ଼ିଛନ୍ତି ମହାବୀର କର୍ଣ୍ଣ । ବୈଦୂର୍ଯ୍ୟଖଚିତ ତାଙ୍କ କବଚରେ ଅସ୍ତ ସୂର୍ଯ୍ୟଙ୍କର ଶେଷ କିରଣରେଖା, ପୁତ୍ରର ମସ୍ତକରେ ପିତାର ଆଶୀର୍ବାଦ-ସ୍ନିଗ୍ଧ ସ୍ପର୍ଶ ପରି ତଥାପି ଲାଗି ରହିଅଛି । ସେହି ଦ୍ୟୁତିରେ କର୍ଣ୍ଣଙ୍କ ମୁଖମଣ୍ଡଳ ଶତଦଳର ସଦ୍ୟୋତାରେ ତଥାପି ଉଦ୍‌ଭାସିତ ।"

ଗାନ୍ଧାରୀ ଶୋକାର୍ତ୍ତ କଣ୍ଠରେ କର୍ଣ୍ଣଙ୍କ ଶବକୁ ଆଲିଙ୍ଗନ କରି କହିଲେ··· "ଆସବାଳୁ, ଜନନୀର ବାତ୍ସଲ୍ୟ-ବଞ୍ଚିତ କୌନ୍ତେୟ ଅଗ୍ରପାଣ୍ଡବ ! ଦୁର୍ଯ୍ୟୋଧନର ମାନ ରକ୍ଷାପାଇଁ ଅପରାଜେୟ ବୀର ତୁମେ, ଆଜି ରଣଭୂମିରେ ଶୋଣିତ-ପଙ୍କରେ ଲୋଟିଅଛ । କିନ୍ତୁ ହେ ସର୍ବଦ୍ରଷ୍ଟା ଦିବାକର, ସର୍ବଶକ୍ତିମାନ ସହସ୍ରଶୀର୍ଷ ହିରଣ୍ୟଗର୍ଭ ଅଂଶୁମାଳୀ, ଯେଉଁମାନେ କ୍ଷାତ୍ରଧର୍ମର ପ୍ରତିକୂଳାଚରଣ କରି ଅନ୍ୟାୟ ଯୁଦ୍ଧରେ କର୍ଣ୍ଣଙ୍କୁ ହତ୍ୟା କରିଅଛନ୍ତି ସେମାନଙ୍କ ପାଇଁ କ'ଣ କୌଣସି ଶାସ୍ତି ନାହିଁ ?"

ଆଉ କେତେ ଦୂର ଅଗ୍ରସର ହେବାପରେ, ସଞ୍ଜୟ କହିଲେ...ଦେବି ! ଭୀମର ଗଦାଘାତରେ ଏଇ ଧରାଶାୟୀ ହୋଇଛନ୍ତି ଉରୁଭଙ୍ଗ ଦୁର୍ଯ୍ୟୋଧନ ବିବସନା ଦ୍ରୌପଦୀର ଉରୁଭଙ୍ଗ ଜାନୁପ୍ରତି ଅଶ୍ଳୀଳ କଟାକ୍ଷର ପ୍ରତିଶୋଧ ନେବାପାଇଁ ଏହା ଥିଲା ଭୀମର ପ୍ରତିଜ୍ଞା । ନୀଳ ମେଘରେ ବିଦ୍ୟୁତ୍‌ର ଚମକ ପରି ତାଙ୍କର ପ୍ରଶସ୍ତ ବକ୍ଷରେ ମଣିମୁକ୍ତା ଖଚିତ ଗଳାହାର ତଥାପି ବିଲମ୍ବିତ ହୋଇଅଛି । ···ଭାଲକୁ ଦେଖ, ଜୀବନମୃତ୍ୟୁର ଏହା ଚରନ୍ତନ ଲୀଳା, ସମସ୍ତେ କର୍ମଫଳର ଅଧୀନ ।"

ଗାନ୍ଧାରୀ ଉଚ୍ଛ୍ୱସିତ କ୍ରନ୍ଦନର ରୁଦ୍ଧ ଆବେଗରେ କହିଲେ "ମୋର ଅନ୍ଧପଟ୍ଟିକା ଉନ୍ମୋଚନ କରିଦିଅ ସଞ୍ଜୟ ! ଜୀବନରେ ଯାହାକୁ ଦେଖି ନାହିଁ, ମୃତ୍ୟୁର ଧୂଳିଶଯ୍ୟାରେ ତାକୁ ଥରେ ଦେଖି ଚିରକ୍ଷୁଧିତ ନୟନର ଜ୍ୱାଳା ପ୍ରଶମିତ କରେ ।"

ଗାନ୍ଧାରୀଙ୍କଠାରୁ ଅଳ୍ପ ଦୂରରେ ଶ୍ରୀକୃଷ୍ଣ ରଥର ଗତି ସ୍ତିମିତ କରିଦେଲେ । ଯୁଧିଷ୍ଠିର ଉଦ୍‌ବେଗ କଣ୍ଠରେ ପଚାରିଲେ, "ରଥର ଗତି କାହିଁକି ସ୍ତିମିତ କଲେ ନାରାୟଣ ?"

ଶ୍ରୀକୃଷ୍ଣ ସ୍ମିତ ହସି କହିଲେ···"ଯେଉଁମାନେ ଶୋକାର୍ତ୍ତ, ବେଦନାର୍ତ୍ତ, ଦୁଃଖୀ, ସେମାନଙ୍କ ନିକଟକୁ କ୍ଷମତା ଓ ଦର୍ପର ଅଭିମାନରେ ରଥାରୂଢ଼ ହୋଇ ଯିବା ଶୋଭନୀୟ ନୁହେଁ । ସେଥିରେ ସେମାନଙ୍କର ଶୋକର ଗାମ୍ଭୀର୍ଯ୍ୟ ଓ ମର୍ଯ୍ୟାଦା ଲଙ୍ଘିତ ହୁଏ । ଗାନ୍ଧାରୀ ପୁଣି ସହଜେ ତୁମର ମାତୃତୁଲ୍ୟା ।'

ଯୁଧିଷ୍ଠିର ଅପରାଧୀ ପରି ରଥରୁ ଅବତରଣ କରି କହିଲେ—"ଆପଣ ଯଥାର୍ଥ କହୁଅଛନ୍ତି ନାରାୟଣ ! ଶୋକାର୍ତ୍ତା ଗାନ୍ଧାରୀଙ୍କ ନିକଟକୁ ପାଦରେ ଯିବା ହିଁ ମୋ ପକ୍ଷରେ ସମୀଚୀନ ।"

ଦୁର୍ଯ୍ୟୋଧନଙ୍କ ଶବ ନିକଟରେ ବସିଥିବା ଗାନ୍ଧାରୀଙ୍କ ନିକଟକୁ ଯୁଧିଷ୍ଠିର ଅଗ୍ରସର ହେଉଥିଲେ । ଶ୍ରୀକୃଷ୍ଣ ତାହାଙ୍କର ଗୋଟିଏ ବାହୁ ଟାଣି ଧରି କହିଲେ— "ଗାନ୍ଧାରୀ ତୁମକୁ କାହିଁକି ସ୍ମରଣ କରିଅଛନ୍ତି, ଜାଣିଛ ଯୁଧିଷ୍ଠିର ?"

ଯୁଧିଷ୍ଠିର କହିଲେ, "ନା, ତାହା ଜାଣେ ନା ତ !"

ଶ୍ରୀକୃଷ୍ଣ ସ୍ମିତ ହସି କହିଲେ···"କୁରୁ ମହାଶ୍ମଶାନର ଶବସ୍ତୂପ ମଧ୍ୟରେ ଗାନ୍ଧାରୀ ନିଜ ପୁତ୍ରମାନଙ୍କୁ ଥରେ ଦେଖିବା ପାଇଁ, ତାଙ୍କର ଅନ୍ଧପଟ୍ଟିକା ଉନ୍ମୋଚନ କରିବା ଉଦ୍ଦେଶ୍ୟରେ ତୁମକୁ ସ୍ମରଣ କରିଅଛନ୍ତି ।"

ଯୁଧିଷ୍ଠିର କହିଲେ···"ଏ ବା କି କଷ୍ଟ କାର୍ଯ୍ୟ ? ଏହି ମୁହୂର୍ତ୍ତରେ ମୁଁ ହେଉ ଗ୍ରନ୍ଥି ଛିନ୍ନ କରିଦେବ ।"

ଶ୍ରୀକୃଷ୍ଣ ସ୍ମିତ ହସି ପୁଣି କହିଲେ···"କିନ୍ତୁ ଯୁଧିଷ୍ଠିର, ତୁମେ ବିସ୍ମୃତ ହେଉଛ କପରି, ଶତପୁତ୍ରର ଜନନୀ ଗାନ୍ଧାରୀ ଆଜି ତୁମରି ହେତୁ ପୁତ୍ରହୀନା ! ଗାନ୍ଧାରୀଙ୍କ ଭାବନାରେ, ତୁଚ୍ଛ ସିଂହାସନ ପାଇଁ ତୁମର ସର୍ବଗ୍ରାସୀ ଲୋଭ ଓ ଈର୍ଷା ଆଜି କୁରୁକୁଳକୁ ନିଷ୍ପ୍ରଦୀପ କରିଅଛି ।

ଯୁଧିଷ୍ଠିର ଅସହାୟ କଣ୍ଠରେ କହିଲେ···"ସେ ବୃତ୍ତାନ୍ତ ଗାନ୍ଧାରୀ ନ ଜାଣିଥିଲେ ପଛେ, ଆପଣ ତ ଜାଣନ୍ତି ଅନ୍ତର୍ଯ୍ୟାମୀ !"

ଶ୍ରୀକୃଷ୍ଣ କହିଲେ···"ଏବେ ତୁମେ ଗାନ୍ଧାରୀଙ୍କ ଅନ୍ଧପଟ୍ଟିକା ଉନ୍ମୋଚନ କରିବା ପରେ ସେ ଯେତେବେଳେ ତୁମର ପାଦ ତଳେ କୁରୁଚୂଡ଼ାମଣି ମାନଗୋବିନ୍ଦ ଦୁର୍ଯ୍ୟୋଧନର ଭୂତଳଶାୟୀ ଶବ ଦେଖିବେ, ସେତେବେଳେ ଶାନ୍ତି ଓ ସାନ୍ତ୍ୱନା ପରିବର୍ତ୍ତେ ତାଙ୍କ ପ୍ରାଣରେ ଶୋକ ବହ୍ନି ଶତଗୁଣରେ ପ୍ରଜ୍ଜ୍ୱଳିତ ହେବ ନାହିଁକି ?"

ଯୁଧିଷ୍ଠିର କିଂକର୍ତ୍ତବ୍ୟବିମୂଢ଼ ପରି କହିଲେ…"ତାହା ଯଥାର୍ଥ । କିନ୍ତୁ ଗାନ୍ଧାରୀ ଯେତେବେଳେ ଅନ୍ଧପଟ୍ଟିକାରେ ଆବରଣ ଉନ୍ମୋଚନ କରିବା ପାଇଁ ମୋତେ ସ୍ମରଣ କରିଅଛନ୍ତି, ମୁଁ କଣ କରିବି କହନ୍ତୁ ନାରାୟଣ ?'

ଶ୍ରୀକୃଷ୍ଣ କହିଲେ—"ଗାନ୍ଧାରୀଙ୍କ ଶତପୁତ୍ର ବିନଷ୍ଟ ହୋଇଯାଇଥାନ୍ତି, ତଥାପି ଜୀବିତ ଅଛି ଦୁର୍ଯ୍ୟୋଧନ । କୁରୁବଂଶର ଶେଷ ପ୍ରଦୀପ ଦୁର୍ଯ୍ୟୋଧନକୁ ଦେଖି ଗାନ୍ଧାରୀଙ୍କ ଶୋକାର୍ତ୍ତ ପ୍ରାଣ ଶାନ୍ତ ଲାଭ କରିବ ।"

ଯୁଧିଷ୍ଠିରଙ୍କ କଣ୍ଠସ୍ୱର ଶୁଣି ଉତ୍କଣ୍ଠିତା ଗାନ୍ଧାରୀ ପଚାରିଲେ—"ସଞ୍ଜୟ, ଏତ ଯୁଧିଷ୍ଠିରଙ୍କ କଣ୍ଠସ୍ୱର ପରି ମନେହେଉଛି !"

ସଞ୍ଜୟ କହିଲେ—"ଶ୍ରୀକୃଷ୍ଣଙ୍କ ସହିତ ଅଗ୍ରପାଣ୍ଡବ ଯୁଧିଷ୍ଠିର ଆପଣଙ୍କ ପଦବନ୍ଦନା ପାଇଁ ଆସିଛନ୍ତି ।"

ଉଦ୍‌ବେଳିତା ଗାନ୍ଧାରୀ ଯୁଧିଷ୍ଠିରଙ୍କୁ ଆଲିଙ୍ଗନ କରିବା ପାଇଁ ଶୂନ୍ୟରେ ଦୁଇ କମ୍ପିତ ବାହୁ ଟେକି କହିଲେ—"ଆସ, ଆସ ବାବୁ ଭଗବତ କରୁଣାର ପ୍ରତିରୂପ, ଅଗ୍ରପାଣ୍ଡବ ଯୁଧିଷ୍ଠିର—ଆଜି ତୁମେ ଅଗ୍ରକୌରବ ମଧ୍ୟ । ମୁଁ ପାପୀୟସୀ ମୋର ଦୁରକର୍ମର ଫଳ ଭୋଗ କରିଅଛି । ଏବେ ମୋର ଦୁର୍ଭେଦ୍ୟ ଅନ୍ଧପଟ୍ଟିକାର ଗ୍ରନ୍ଥି ଥରେ ଉନ୍ମୋଚନ କରିଦିଅ ପୁତ୍ର । ଯେଉଁ ଶତପୁତ୍ରଙ୍କୁ ଜନ୍ମ ଦେଇ ମୁଁ ସ୍ୱଚକ୍ଷୁରେ କେବେ ଦେଖି ନାହିଁ, ଏବେ, ସେମାନଙ୍କ ପ୍ରଥମ ଓ ଶେଷ ଥରପାଇଁ ଦେଖି, ମୋର ଅତୃପ୍ତ ନୟନର ଜ୍ୱାଳା ପ୍ରଶମିତ ହେଉ ।"

ଗାନ୍ଧାରୀଙ୍କ ବ୍ୟାକୁଳ ନିବେଦନରେ ଯୁଧିଷ୍ଠିର ଅନ୍ଧପଟ୍ଟିକାର ଗ୍ରନ୍ଥି ଛେଦନ କରିବା ପାଇଁ ଅଗ୍ରସର ହେଉଥିଲେ । ଶ୍ରୀକୃଷ୍ଣ ତାହାଙ୍କର ଗୋଟିଏ ବାହୁ ଧରି ଅସ୍ପଷ୍ଟ କଣ୍ଠରେ ଦୁର୍ଯ୍ୟୋଧନକୁ କହିଲେ—"ଦୁର୍ଯ୍ୟୋଧନ, ଜନନୀ ଗାନ୍ଧାରୀଙ୍କ ଅନ୍ଧପଟ୍ଟିକା ଉନ୍ମୋଚିତ କର । ପୁତ୍ରହୀନା, ଶତପୁତ୍ରର ଜନନୀ ଗାନ୍ଧାରୀ, ତୁମକୁ ସଶରୀରେ ଜୀବିତ ଦେଖିଲେ ପୁତ୍ରଶୋକ ବିସ୍ମୃତା ହେବେ ।"

ଶ୍ରୀକୃଷ୍ଣଙ୍କ ଦୁଇ ରକ୍ତାଧରରେ ରହସ୍ୟ-ବିଜଡ଼ିତ ହସ ।

ଯୁଧିଷ୍ଠିର କହିଲେ— "ତାହାହିଁ କର ଦୁର୍ଯ୍ୟୋଧନ ।"

ଯୁଧିଷ୍ଠିରଙ୍କ ନିର୍ଦ୍ଦେଶରେ ତାଙ୍କର ଚିର ଅନୁଗତ ଦୁର୍ଯ୍ୟୋଧନ ମୁହୂର୍ତ୍ତକ ମଧ୍ୟରେ ଗାନ୍ଧାରୀଙ୍କର ଅନ୍ଧପଟ୍ଟିକାର ଗ୍ରନ୍ଥି ଛିନ୍ନ କରିଦେଲା । ଅନ୍ଧପଟ୍ଟିକାର କୃଷ୍ଣ ଆବରଣ ତଳୁ ଅଗ୍ନ୍ୟୁଦ୍‌ଗାର ସର୍ବନାଶୀ ଶିଖା ଯେପରି ଉନ୍ମୀଳନ କରିଉଠିଲା । ସେହି କରାଳୀ ଦୃଷ୍ଟିର ପୁଞ୍ଜୀଭୂତ ତେଜରେ ଦୁର୍ଯ୍ୟୋଧନ ଦୁର୍ଯ୍ୟୋଧନଙ୍କ ଭୂଲୁଣ୍ଠିତ ଶବ ଉପରେ ଭସ୍ମ ରାଶି ପରି ଝରିପଡ଼ିଲା ।

ଯୁଧିଷ୍ଠିର ଆର୍ତ୍ତନାଦ କରିଉଠିଲେ- "ଏ ପୁଣି କି ଚତୁରାଳନା କଲ ଚକ୍ରୀ ? ଦୁର୍ଯ୍ୟୋଧନ ଯେ ମୋର ଚିର ଅନୁଗତ !"

ଶ୍ରୀକୃଷ୍ଣ ଅନୁଚ୍ଚ କଣ୍ଠରେ କହିଲେ—"ମାରବ ରହ ଅବୋଧ ! ଅଜ ଗାନ୍ଧାରୀଙ୍କ ନୟନାନଳରେ ଦଗ୍ଧ ହୋଇଥିଲେ, କାଲି ତୁମେ ହସ୍ତିନାର ସିଂହାସନରେ ଅଭିଷିକ୍ତ ହୋଇଥାନ୍ତ କପର ? ଏହା ରାଜମଦ—ରାଜମଦର ଯଜ୍ଞକୁଣ୍ଡରେ ଏହିପରି କେତେ କଣ୍ଟକ ଓ କଣ୍ଟକ ଦୁର୍ଦ୍ଧର୍ଷର ଆହୁତ ଏକ ଦୈନନ୍ଦିନ ଘଟଣା । ସେଥିରେ ତୁମପରି ଧୀମାନ ବିଚଳିତ ହେବା ଉଚିତ ନୁହେଁ, ଯୁଧିଷ୍ଠିର !"

ସଞ୍ଜୟ ବଜ୍ରାହତ ଶୋକାପ୍ଳୁତ କଣ୍ଠରେ କହିଲେ—"ଏ କଣ କଲେ ମହାଦେବ ! କୁରୁକୁଳର ଏକମାତ୍ର କ୍ଷୀଣ ପ୍ରଦୀପଶିଖା ଦୁର୍ଦ୍ଧର୍ଷଙ୍କୁ ସୁଦ୍ଧା ଏହିପରି ନିର୍ବାପିତ କରିଦେଲେ ?"

ଶ୍ରୀକୃଷ୍ଣ ସମବେଦନାର ଅଭିନୟ କରିକହିଲେ···"କହନ୍ତୁ କିଏ କହେ ଆପଣ ପୁତ୍ରହୀନା ? କୌରବ କିଏ, ପାଣ୍ଡବ କିଏ ? ସେମାନଙ୍କୁ ଏବେ ପୁତ୍ର ରୂପେ ଗ୍ରହଣ କରନ୍ତୁ ।"

ଶ୍ରୀକୃଷ୍ଣଙ୍କ ଦୁଇ ଓଷ୍ଠ ଉପରେ ରହସ୍ୟବିଜଡ଼ିତ ହସ ।

ଗାନ୍ଧାରୀ ପଦ ତଳେ ଦୁର୍ଦ୍ଧ ଆତ୍ମମୁକ୍ତିଲ ପଡ଼ି ଝରିପଡ଼ିଥିବା ଦୁର୍ଦ୍ଧର୍ଷର ଭସ୍ମରାଶି ଆଡ଼େ ଚାହିଁ, ଉନ୍ମାଦନୀ ପରି ଅଟ୍ଟହାସ୍ୟ କରି କହିଲେ..."ତୁଟିଛି ଚକ୍ରୀ ତୁଟିଛି ତୁମର ଚକ୍ରାନ୍ତ । କିନ୍ତୁ ସୁଦର୍ଶନ ଚକ୍ରର ଚକ୍ରାନ୍ତ ଓ ଶକ୍ତିରେ କେବଳ କୌଣସି ସିଂହାସନ ରହି ନାହିଁ କମ୍ବା ରହିବ ନାହିଁ । ପ୍ରତାରିତ ଓ ନିପୀଡ଼ିତ ଆତ୍ମାର ଅଭିଶାପରେ ସବୁ ଦଗ୍ଧ ହୋଇଯିବ, ସବୁ ଭସ୍ମ ହୋଇଯିବ । ତୁମର ମଧ୍ୟ ସେଥିରୁ ନିସ୍ତାର ନାହିଁ, ଶ୍ରୀକୃଷ୍ଣ ! ସ୍ୱଜନଦ୍ରୋହ ମଧ୍ୟରେ ସୋମବଂଶ ପରି ବିରାଟ ଯଦୁବଂଶ ମଧ୍ୟ ନିଷ୍ପ୍ରଦୀପ ହୋଇଯିବ । ତୁମର ପ୍ରିୟପୁତ୍ର ପ୍ରଦ୍ୟୁମ୍ନ ସୁଦ୍ଧା ସେଥିରୁ ରକ୍ଷା ପାଇବ ନାହିଁ ।"

ଉଚ୍ଛ୍ୱସିତ କ୍ରନ୍ଦନର ତୁଙ୍ଗ ଆବେଗରେ ଗାନ୍ଧାରୀ ଦୁର୍ଦ୍ଧର୍ଷର ଭସ୍ମରାଶି ଉପରେ ଲୋଟି ପଡ଼ିଲେ ।

ଶ୍ରୀକୃଷ୍ଣଙ୍କ ଦୁଇ ଓଷ୍ଠାଧରରେ ଚିର ରହସ୍ୟ ବିଜଡ଼ିତ ସ୍ମିତରେଖା, ଦ୍ୱିତୀୟାର କ୍ଷୀଣ ଶଶୀରେଖା ପରି ବିକ୍ଷୁବ୍ଧ ଅନ୍ଧକାର ମଧ୍ୟରେ ନିର୍ବାପିତ ହୋଇଗଲା ।

ଅସ୍ତାଚଳରେ ଇନ୍ଦ୍ରପ୍ରସ୍ଥର ରକ୍ତମାଳା ନେପଥ୍ୟରେ ସର୍ବଦ୍ରଷ୍ଟା ଦିବାକର ମଧ୍ୟ ଅସ୍ତମିତ ହୋଇଗଲେ ।



# ପିଚ୍ଛା ପରୀକ୍ଷା

● ଶ୍ରୀ ଗୋପୀନାଥ ମହାନ୍ତି

ଗଲ୍ପଟି ଯାହାର ତା ନାଁ ନ କହି ମୁଁ ଗାଁ କହିବି । ଗାଁ ତ ବାଣପୁର ଆଡ଼ର, ପାହାଡ଼ ତଳ । ଆକାରରେ ସେ ମଣିଷଟି ବି ଗଣ୍ଡେ ଗ୍ରେଟିଆ ପାହାଡ଼ ସୋଲେଇ ପର୍ବତରୁ ସାନ ଖଣ୍ଡେ ଛିଣ୍ଡି ପଡ଼ି ଗଡ଼ି ଗଡ଼ି ତଳକୁ ଆସି ତଳେ ଗୋଡ଼ ଲଗାଇଦେଲା । ସେଇଠୁ ବଢ଼ିଲା । ସେଇଠୁ ହାଇସ୍କୁଲ ପାଠ ଶେଷ କରି କଟକରେ ଡାକ୍ତରି ସ୍କୁଲରୁ ପାଶ୍‌ କରିସାରି ଗାଁରେ ବସି ଡାକ୍ତରୀ ଛଡ଼ା ଅନ୍ୟ ହାନଲଭରେ ବି ମୁଣ୍ଡ ଖେଳେଇଲେ । ଏହିପରି । ବରକୁଳ ପାଖ ପ୍ରକାଣ୍ଡ ଆକାର ମଙ୍ଗରାଜଙ୍କୁ ଯଦି ଆକାରରେ ରାବଣ କୁହାଯିବ ତେବେ ସ୍ବାକ୍ତ ଆକାରରେ ମେଘନାଦ କହିଲେ କିଛି ଆପତ୍ତି ନାହିଁ । ତେବେ ଚିଲିକା ମାଛ, ଶାଳିଆ ନଈ ତଳ କାଦୁଅ ପଙ୍କୁଆ ଜମିର ଧାନ, ବାଣପୁରର ପ୍ରସିଦ୍ଧ ମୂଗଡାଲି, ସୋଲ୍ଲେଇ ସୋଲେଇ ତଳ ଔଷଧ-ପବନ ମା-ଭଗବତୀର ଆଶୀର୍ବାଦ, ସବୁ ମିଶି ବାଣପୁର ଲୋକଙ୍କ ଆକାରକୁ ଟିକିଏ ବଡ଼ କରିଦିଏ ବୋଲି ସେମାନଙ୍କ ବିଶ୍ୱାସ, ଆଉ ସେମାନେ ଗର୍ବ ଅନୁଭବ କରନ୍ତି ଯେ ପ୍ରସିଦ୍ଧ ବାଣାସୁରଙ୍କ ରାଜ୍ୟ ସେହି । ଡାକ୍ତର ମେଘନାଦ ବାଣାସୁରଙ୍କ କଥା କହୁ କହୁ ଆଖି ପୋଛନ୍ତି । “ଆଃ ଓଡ଼ିଶା, କାହିଁ ସେ ଶକ୍ତି । କାହିଁ ସେ ସାମର୍ଥ୍ୟ ! କାହିଁ ସେ ବୈଭବ ! କାହାନ୍ତି ସେ ବାଣାସୁର !” ସେ ଉଠେ ଖଣ୍ଡା ବୁଲାନ୍ତି, ଜଣ ମୋଟା ବୁଢ଼ାଙ୍କ କଳକଳା ଛାତି ପାଇକାଳି ଖେଳ ଦେଖାନ୍ତି । ଖଣ୍ଡାଏତ୍‌ ଗାଁ ଦାଣ୍ଡରେ ଯେଉଁ ପ୍ରକାଣ୍ଡ ଗୋଲ ଗୋଲ ପଥର ପଡ଼ିଥାଏ ଯାହାକୁ ନଇଁପଡ଼ି ବାହାରେ କୁଣ୍ଢେଇଧରି ଛାତିରେ ଲଗେଇ ଧରି ଟେକିବାକୁ ହୁଏ, ତାକୁ ବି ଟେକନ୍ତି । ଏଣେ ପ୍ୟାଣ୍ଟ, କୋଟ୍‌, ଟାଇ ସୋଲାଟୋପ୍‌ ପିନ୍ଧନ୍ତି । ରସରସିଆ କଥା କହନ୍ତି ବେଳା ବେଳା, ଆଉ ଲୋକ କହନ୍ତି—

ବାଣପୁରିଆ ଭାଇ
ଶାଳିଆ ନଈ
ଶୋଲେଇ ଶିଖ
ମୟୂର ବାଙ୍କ ସ୍ବାକ୍ତ ହସିଆର

ପାଇକ କଳକଳା ରଡ଼ ଦେଇ କୁହାଟ ମାରୁ ମାରୁ, ଝାଳନାଳ ହୋଇ ପଥରମାନ ଟେକି ପିଠିରେ ବାହାରେ କଚ ଦେଉଥିବା ଦଳୁଆଙ୍କ ଭଲୁ ଭଲୁ, ଲମ୍ବା ପାଞ୍ଚହାତିଆ ଛହାତିଆ ଖଣ୍ଡା ପଜେଇ ପଜେଇ, ଝିଟିପିଟି ଲଙ୍ଗୁଡ଼, ଟେମେଣି ଚଢ଼େଇର ଜଳ ଦାନ୍ତ, ବେଙ୍ଗ ଘୂଅ, ମୁଣ୍ଡା ନଶ ଭଦଭଦଳିଆ ପର, ଧୋବ ଅଙ୍କରାନ୍ତ ଚେର, ବାରବର୍ଷିଆ ପତର ଏକାଠି ବାଟି ମାଇ ଦୁଧରେ ଫେଣ୍ଟି ଖଣ୍ଡା ଧାଡ଼ିରେ ବୋଳି କେମିତି ପାଗ କଲେ ଏ ଖଣ୍ଡା ଜକଚକତା ହେବ ସେଥିରୁ ଉପାୟ କରୁ କରୁ ଇଂରେଜ ମାଡ଼ି ଆସିଲେ, ଦେଶ ଉଚ୍ଛନ୍ନ ହୋଇଗଲା ।

ତିନ ଘଣ୍ଟା ପରେ ଚତୁର୍ଥ ଘଣ୍ଟାକ ବି ବସିପଡ଼ି ପ୍ରକାଣ୍ଡ ପାନବଟାରୁ ଦ୍ୱାବିଂଶ ଖଣ୍ଡ ପାନକୁ ପ୍ରକାଣ୍ଡ ହାଁଉ ଭିତରେ ଭର୍ତ୍ତି କରି ଦୁଇ ନାକପୁଡ଼ାରେ ଅଧ ଚାମୁଚଏ ମାପରେ ନାଶ ଠେସି ଆଣବିକ ପବନ ପ୍ରକୋପରେ ଛିଙ୍କି ଡାକୁର ମେଘନାଦ କହିଲେ—

"ତା ପରେ ଦଳେଇ ଅର୍ଥାତ୍ ଦଳପତିମାନଙ୍କୁ କୁହାଗଲା ତୁମେ ପାଲକିର ପହରା ଦବ ସାହେବ ବଙ୍ଗଳାକୁ ଆସିଲେ ତମେ ବଙ୍ଗଳା ଓଗଳେଇବ, ପାଣି ଆଣି ଦବ, କମୋଡ଼ ମୁଣ୍ଡେଇ ରାସ୍ତାରେ ଚାଲିବ, ପେଟ ବକଲରେ ଗାଁ ଗୋଟାକର ଦଳପତି କମୋଡ଼ ବି ବୋହିଲେ ଆଜ୍ଞା, ଖଣ୍ଡାଏତ ରାବଳ କୌଣସିମତେ ଆଗ ମୁଁ ବଞ୍ଚିଯାଏ, ଜୀବନ ରଖେ, ପ୍ରାଣ ଉପରେ ପଡ଼ିଲେ ସବୁ ବୀରତ୍ୱ କୁଆଡ଼େ ଉଡ଼ିଯାଏ, ଦେଖୁନାହାନ୍ତି ଜାପାନୀ ଆକ୍ରମଣ ବେଳେ ସିଙ୍ଗାପୁରରେ ବ୍ରିଟିଶକେଶରୀ କଣ କଲେ—"

ଚିଲିକା ଶୋଇ ଶୋଇ ସ୍ୱପ୍ନ ଦେଖୁଛି । ଗଢ଼ଣ୍ଠା ପାଉଁଶ ବର୍ଣ୍ଣ, କାଚପରି ଥିର ପାଣି, ଏକ ପ୍ରଚଣ୍ଡ ଅର୍ଦ୍ଧବୃତ୍ତି ଆକାରର ପାଣି ସେପାରି ଛ'କୋଶ ଦୂରରେ ଲାଗିଲାପରି ଦିଶୁଛି କେଇଟା ଗଛର ପ୍ରେତାତ୍ମା, ସେଠି ଗଡ଼ କୃଷ୍ଣପ୍ରସାଦ । ବାଁ ପଟେ ତେଣିପରି ପାହାଡ଼ ଚିଲିକା ଭିତରକୁ ପଶି ଆସିଛି, ସେଠି ଦୀପଦାଣ୍ଡିଆ ପାହାଡ଼, ଯାହା ମୁଣ୍ଡରେ ପ୍ରକାଣ୍ଡ ଦୀପ ଜଳିଲେ ଚିଲିକାର ବୋଇତମାନଙ୍କୁ କୂଳକୁ ଆସିବାକୁ ବାଟ ଦିଶୁଥିଲା । ଡାହାଣେ ଜଟିଆ ନାସିର ପାହାଡ଼ ଖଣ୍ଡାଏତର ଖଣ୍ଡାପରି ବଙ୍କେଇ ହୋଇ ଚିଲିକା ଭିତରକୁ ତେରଛା ହୋଇ ରହିଛି, ଆକାଶରେ ଖଣ୍ଡଖଣ୍ଡ ଜକ ଜକ ରୂପେଲି ମେଘ ଭାସି ଭାସି ଚାଲିଛି । ଦୂରରେ ଦୂରରେ ଚିଲିକା ପାଣିରେ ଛୁଡ଼ ଛୁଡ଼କା ଗୋଟି ଗୋଟିକିଆ ବହଳ କଳା ଛୁଞ୍ଚିପରି ଡଙ୍ଗା; ସେଥିରେ ସିଧା ଠିଆ ହୋଇଥିବା ଗୋଟି ଗୋଟିକିଆ ମଣିଷଙ୍କ ଛାଇ ମୂର୍ତ୍ତି । ଚିଲିକା ପାଣିରେ ଅସଂଖ୍ୟ ଟିକି ଟିକି ଉଭିଦ ଘାସ ବୁଦା ଗଛପରି ଦିଶୁଛି । କୂଳଠୁ ଅଳ୍ପ ଛାଡ଼ି ଧାଡ଼ି ଧାଡ଼ି ହୋଇ ମାଛଧରିବା ବଳା ଟଙ୍ଗା ହୋଇଛି । କୂଳରେ ଲୁଡ଼ି ଲୁଡ଼ି ହୋଇ ଧଳା ପଥର ଗଦା ହୋଇଛି । କରେକେ ଘରଚୂଡ଼ିକ, ଡେଙ୍ଗା ଡେଙ୍ଗା ନଡ଼ିଆଗଛ

ତଳେ ମାଟି ଘର, ତାର ପାଉଁଶିଆ ହଳଦିଆ ସ୍ତୂପ । ସମସ୍ତେ ସେଠିକି ଅପେକ୍ଷା କରି ଗୁନ୍‌ଥାନ୍ ଠିଆ ହୋଇ ରହିଛନ୍ତି, ଏଣେ ଇତିହାସ ବୋହି ଯାଉଛି, ସମସ୍ତ ବୋହି ଯାଉଛି । ଯେପରି କିଏ କଣ କଥା କହୁଥିଲା, କଣ ନିର୍ଦ୍ଦେଶ ଦେଉଥିଲା; କଥା ମଝିରେ ଅଟକି ଯାଇଛି । ବିତି ଗଲାଣି ପାଖେ ଚାରି ଶହ ବର୍ଷ; ପୁରୁଷୋତ୍ତମ ଦେବ କୃଷ୍ଣା ନଈକୂଳରେ ଶେଷ ନିଶ୍ୱାସ ଛାଡ଼ିଥିଲେ । ସେଦିନୁ କେତେ ଦୀର୍ଘଶ୍ୱାସ ଛାଡ଼ିଲେଣି ଏ ଦେଶ, କେତେ ଦୁଃଖ ଦୁର୍ଦ୍ଦଶା ଭିତରେ ପଡ଼ିରହି ଦିନ ଗଣିଛି, କେତେବେଳେ ଅବା ମାଥ ଉଠିଛି କେଉଁ ଘଡ଼ିରେ, କେତେବେଳେ ବିଦେଶୀ ଶାସକର ଘୋଡ଼ା ଫେରିବା ଜମୋଡ଼୍ ବୋହି ଚାଲିଛି ଦଳେଇ, ଦଳିବେହେଉ ପହରା ଦେଇଛି । ଦିନ ମଉଳି ମଉଳି ଆସୁଛି । ଆଉ ଟିକିଏ ଆରମ୍ଭ ହେବ ଭଗବାନଙ୍କ ପାଖରେ ସଞ୍ଜ ଆଳତି, ପୁରୁଣା ବଡ଼ ମାଦଳ ଛାଉଁ ଛାଉଁ ହୋଇ ବାଜିବ, ତା ସହିତ ତାଉଁକି ଡ଼ିଡାଉଁ ଦଡ଼ ଘଣ୍ଟା, ଖୀରଚୁରି ଖୀର କାହାଳୀ । ଶୋଳେଇ ପର୍ବତରୁ ଖଳେଇ, ଖଳେଇ ପର୍ବତରୁ ଶୋଳେଇ ଲହଡ଼ି ଖେଳିବ ସେହି ଶବ୍ଦ, ମନ୍ଦିରେ ମନ୍ଦିରେ ସତେ କି ପ୍ରତିଧ୍ୱନି ଉଚ୍ଛୁଳି ଉଠିବ, ହନୁଆଁ ଓଉର ଉଗ୍ରତାରା ଦେଉଳରେ, ପୁଣି ପର୍ବତ ଉପରେ ଜଙ୍ଗଲରେ ମାଡ଼ି ମୁଣ୍ଡି ହୋଇ ପଡ଼ିଥିବା ଗଡ଼ମାନଙ୍କରେ—ପୁଞ୍ଜିଆମାଗଡ଼, କୋଉଣେ ନ ଯାଉଣୁ ନସୁଲଜା ଗଡ଼, ପୁଣି କୋଉଣେ ବଙ୍କାଡ ଗଡ଼, ପ୍ରାଚୀନ ରାଜଧାନୀ, ପୁଣି କୋଉଣେ ଗଲେ ଅଷ୍ଟଗଣ୍ଡ । ଅଷ୍ଟଗଣ୍ଡର ସାତ ବଖରା ଅନ୍ଧାରି ଗୁମ୍ଫା, ସେଠି ସ୍ୱାଧୀନତା ସଂଗ୍ରାମର ନେତା କୃତ୍ତିବାସ ପାଟଶାଣୀ ରହୁଥିଲେ, ତପ ସାଧୁଥିଲେ ପୁଞ୍ଜିଆମାଗଡ଼ ପଛଆଡ଼େ ମାଇଲିଏ ଗଲେ ଖଣ୍ଡାଧାର ପର୍ବତ ତଳେ ବରଜାଇ ଠାକୁରାଣୀ, ମହାପ୍ରସିଦ୍ଧ ସେ । ଯୋଦ୍ଧା ଖଣ୍ଡାଏତମାନେ ତାଙ୍କୁ ସାଧୁଥିଲେ ।

ସବୁ ମନେ ପଡ଼ିଲା ଡାକ୍ତର ମେଘନାଦଙ୍କ କଥାରେ । ଆଉ କୃତ୍ତିବାସ ପାଟଶାଣି ନାଁ ଧରୁଧରୁ ସତେ ଯେପରି "ପଞ୍ଝିଆ ଫିରିଗି"ର ଇତିହାସ ଆଖି ଆଗେ ଆଗେ ଖେଳିଗଲା । ଗମ୍ଭାରମୁଣ୍ଡା ପାଖେ ଭୁଟପଡ଼ା ଗାଁ । ପୁଣି ପଞ୍ଝି ଗାଁ—ଗୋରୁମୁଣ୍ଡା ଆପିଲା ପରି ବଳଦ ବିକାଳି ପଞ୍ଝିଆଙ୍କୁ ସ୍ୱାଧୀନତା ସଂଗ୍ରାମରେ ରାଜା ବନ୍ଦୀହୋଇଥିଲା ବୋଲି ତା ନାଁରେ ସେ ଗାଁ ବସିଥିଲା, ପୁଣି ଦେଓଗାଁ—ଯେଉଁଠି ପାଟଶାଣିଙ୍କର ନିଜର ଘର ଥିଲା, ଓଡ଼ଗାଁ—ଯେଉଁଠି ଖଣ୍ଡାଏତ ସୈନ୍ୟମାନେ ରହୁଥିଲେ; ଝଙ୍କା ସ୍ୱକୁଣ୍ଡା ଗଛ ମାଳ ମାଳ ଆଉ ଡେଙ୍ଗା ନଡ଼ିଆ ଗଛର ତୋଟା ଆଉ ଏ ପାହାଡ଼ ଆଉ ଏ ଟିଲିକା ସବୁ ଯେପରିକି ପୁରୁଣା ହଜିଲା କଥାର ସାକ୍ଷୀ ଦେବ ଯେ ବାଣାସ୍ତ୍ରରଠୁ ଏଯାଏ କେତେ ଘଟଣା ଘଟି ଯାଇଛି କେତେ ଇତିହାସ, ତାହାର ମଝିରେ ଅତୀତର ନିଦର୍ଶନ ଉଠି ଠିଆ ହେଲେ ଯେପରିକି କୃତ୍ତିବାସ ପାଟଶାଣୀ, ସୌନ୍ଦର୍ଯ୍ୟରେ କୋଣାର୍କ ଉତ୍ତର କାନ୍ଥରେ ଘୋଡ଼ା ଉପରେ ସୂର୍ଯ୍ୟ ବଂଶରେ

ବସିଥିବା ନରସିଂହ ଦେବଙ୍କ ପରି ବରକୁଳର ପ୍ରକାଣ୍ଡ କେନ୍ଦୁ ମଙ୍ଗରାଜଠୁଁ ଅଧିକ ପ୍ରକାଣ୍ଡତର ଅଧିକ ବଳଶାଳୀ; ସେହି କଣେ ଲୋକ ଯେପରିକି ସମସ୍ତଙ୍କୁ ଅଭିଭୂତ କରି ରଖିଲେ; ଯେପରି ସେ ଅଭିଭୂତ କରି ରଖିଥିଲେ ସହସ୍ର ସହସ୍ର ଲୋକଙ୍କୁ ଏକ ବର୍ଷ ଯାକେ; ତାଙ୍କ ଶଶୁର ବଡ଼ମପୁରର ଦଳବେହେରା ଇଂରେଜଙ୍କଠୁ କିଛି ପାଇବା ଲୋଭରେ ତାଙ୍କୁ ଧରେଇ ଦେବାଯାକେ, ଆପେ ଫାସିକାଠରେ ଝୁଲିବା ଯାକେ; ଯେପରିକି ସେ ଅତି ବାସ୍ତବ; ଅତି ସତ ।

ଡାକ୍ତର ମେଘନାଦ ଏକ ପ୍ରଚଣ୍ଡ ଦୀର୍ଘଶ୍ୱାସ ପକାଇ କହିଲେ, "ଯାଉଛନ୍ତି ସେ ଯାଉଛନ୍ତି । ଆଜି ଓଡ଼ିଶା ମୁଲକରେ ସେପରି କେହି ପୁଅଟାଏ ନାହିଁ । ଆମେ ଆଜି ଇତିହାସ ପଢ଼ୁଛୁ, ଘୋଷୁଛୁ, ଯେମିତି ହଜାର ହଜାର ଅନ୍ୟ ଲୋକ କରୁଛନ୍ତି; କିନ୍ତୁ ଆପଣା ବୁଦ୍ଧିବଳରେ ଦେଶର ଇତିହାସ ତିଆରି କରି ଭବିଷ୍ୟତରେ ବଂଶଧରମାନଙ୍କ ପାଇଁ ରଖିଦେଇ ଯିବାଭଳି ଆମଠି କେହୁ ନାହିଁ । ଭବିଷ୍ୟତରେ ଲୋକେ ଆମକୁ ମନେରଖିବେ ନାହିଁ, ମନେ ରଖିବାକୁ ଚେଷ୍ଟା କଲେବି ପାରିବେ ନାହିଁ । ଗଲା ସାଢ଼େ ଚାରିଶ ବର୍ଷ ସହିତ ସେ ବି ମିଶିଯିବ ଏକ ଅନ୍ଧାର ଇତିହାସ ।"

ସାମ୍ନାରେ ଚିଲିକା, ସୁନ୍ଦର ଚିଲିକା, ନିରର୍ଥକ ପ୍ରାଚୀନ ଗଡ଼ସ୍ଥାନ ସ୍ତୂପାରେ ହୋଇଥିବା ଉତ୍କଳ-କମଳା-ବିଳାସ-ଦୀର୍ଘିକା, ମରାଳ-ମାଳିନୀ-ନୀଳାମ୍ବୁ ଚିଲିକା ସେ ଆଦୌ ନୁହେଁ, ଯେଉଁ ସବୁ ଶବ୍ଦ ଶୁଣିଲେ ମନରେ ଗୋଟାକୁ ଗୋଟା କିଛି ସ୍ପଷ୍ଟ ଚିତ୍ର ଉଠେ ନାହିଁ, କେବଳ ଗୋଟିଏ ଶବ୍ଦର ଗୋଟିଏ ଅସ୍ପଷ୍ଟ ଚିତ୍ର ପାଖେ ଆଉ ଶବ୍ଦର କୁହୁଡ଼ିଆ ଛବିକୁ ଏକାଠି ଥୋଇଲେ ବିନ୍ୟାସରେ କୌଣସି ଛନ୍ଦ କୌଣସି ତାତ୍ପର୍ଯ୍ୟ ହିଁ-ବା ହୁଏ ନାହିଁ । ସୁନ୍ଦର ଚିଲିକା, ଜୀବନ୍ତ ଚିଲିକା ଆଖି ଆଗେ ମେଲି ହୋଇ ରହିଥିବା ଛବି ସମଷ୍ଟିରୁ ଚିଲିକାର ବାସ୍ତବତ୍ୱ ବାରି ହୋଇ ପଡ଼େ । ସେଠି ଛଟପଟ ନାହିଁ, ହାତ ଗୋଡ଼ ପିଟାପିଟି ପାଇଁ ଗରଜ ନାହିଁ ଶବ୍ଦ ନାହିଁ । ସେ ଜାଣେ ସେ କିଏ, ଅସ୍ପଷ୍ଟ ହୋଇ ଅନନ୍ତ ଆକାଶ ସହିତ ଲସ୍ତୁ ଲଗାଏ । ସେଠି ଆଖି ପଲକରେ ଛବି ବଦଳି ବଦଳି ଯାଉଥାଏ, ନାନାଜାତି ବର୍ଣ୍ଣ, କେତେବେଳେ ସବୁଜ, କେତେବେଳେ ହଳଦିଆ, କେତେବେଳେ ଶୁଆପକ୍ଷିଆ, କେତେବେଳେ ନାଲି, କେତେବେଳେ କେଉଁ ବର୍ଣ୍ଣ । ସେଠି ଆକାଶ ଆଉ ପାଣି ଏକ ଛବିର ଏପାଖ ସେପାଖ ହୋଇ ମିଶିଯାଏ । ପୁଣି ଉପର ପାହାଡ଼ର ବହଳ ନେଳି, ତଳ ପାହାଡ଼ର ଗାଢ଼ ସବୁଜ, କୂଳ ତୋଟାର ଶୁଆଧୂସର ବର୍ଣ୍ଣ, କେତେବେଳେ କୂଳପଟ ପାଣିରେ ଜକ ଜକ ସବୁଜ ଓ ଦୂର ପାଣିର ନେଳିକଳା ଏକ ଛନ୍ଦରେ ଆଙ୍କି ହୋଇ ରହେ । ସେଠି ଦୃଷ୍ଟି ଆପେ ଚହଲିଯାଏ ଅତି ଦୂରକୁ ବୋଲି, ଆକାଶକୁ ଅନୁଭବ କରିହୁଏ । ପୁଣି ପାଣିକୁ, ଆକାଶରେ ଦେଖିହୁଏ

ଦେବଦେବୀମାନଙ୍କର ଅଦ୍ଭୁତ ମୂର୍ତ୍ତି, ଅସଂଖ୍ୟ ଛବି, ଆପଣାକୁ ବିଚ୍ଛିନ୍ନ କରି ହୁଏ, ମନଇଚ୍ଛା ବହୁତ ଦୂରକୁ ନେଇ, ପୁଣି ଆପଣା ଖୋଳରେ ଆଉ ପଦାରେ କଳ୍ପନାରେ ପ୍ରତିଫଳିତ ହୋଇଥିବା ଆପଣା ବ୍ୟକ୍ତିତ୍ୱକୁ ନିରେଖି ଦେଖି ହୁଏ, ଦେଖୁ ଦେଖୁ ହୁଗୁଳା ହୋଇଯାଇ ସବୁ କୁଆଡ଼େ ହଜିଯାଏ । ଆଉ ଏଣେ ଚିଲିକାର ସେହି ମାୟା ବିସ୍ତୃତ ଅନ୍ଧାର ଢଳିଲେ ବି ଯନ୍ତ୍ରରେ ହାତ ଗ୍ରେଇଁଦେଲେ ଫସ୍‌-ଫରସ୍ ଆଲୁଅରେ ପାଣିରେ ଗାର କାଟିହୁଏ ।

ଇତିହାସ ଭୁଲିଯାଇଛି । ଚିଲିକାରୁ ସମୁଦ୍ରକୁ ସିଧା ବାଟ ବନ୍ଦ ହୋଇଛି । ଚିଲିକା ପୋତି ହୋଇ ପଡ଼ିଲାଣି । ଖାଲି ସଢ଼ା ଫଳ ସର ସର, ତାଁର ସଢ଼ା ଜଳର ଦୁର୍ଗନ୍ଧ କୋଶ କୋଶ ଦୂରକୁ ପବନରେ ଉଡ଼ି ଉଡ଼ି ଯାଉଛି । ତଥାପି ସବୁ ସଚେତ ସରି ନାହିଁ । ତାକୁ ଚାହିଁଲେ ଲାଗୁଛି କଣ ଯେପରିକି ଘଟିବ ବୋଲି ସବୁ ସଚେତ ଅପେକ୍ଷା କରିଛି । ଚିଲିକା ବି ଅପେକ୍ଷା କରିଛି । ନିତି ସକାଳୁ ଚିଲିକାର ସ୍ଥିର ଦର୍ପଣପରି ସିନ୍ଦୂରଗୁଣ୍ଡା ଅଜାଡ଼ି ଅଜାଡ଼ି ସୂର୍ଯ୍ୟ ସେ ପାଣିରୁ ବାହାରେ, ଆକାଶରେ ଚଢ଼େ, ସୋଲେଇ ପାହାଡ଼ ସେପଟରେ କେଉଁ ଯୋଡ଼ିଏ ପାହାଡ଼ ଶିଙ୍ଘ ମଝିରେ ଖାଲି ଭିତରକୁ ଗଡ଼ି ପଡ଼େ, ଏମିତି ଦିନପରେ କେତେ ଦିନଯାଏ, ହଂସପଲ ଉଡ଼ି ଆସନ୍ତି, ପାଣି ଯାକ ବସନ୍ତି, ଶୀତ ସରେ, ହଂସ ଚାଲିଯାଆନ୍ତି । କିନ୍ତୁ ଚିଲିକାର ସେ ଟାକିବସିବା ସରେ ନାହିଁ ।

ଘଟିବ, ଘଟିବ ଅବଶ୍ୟ କିଛି ଘଟିବ ।

ପ୍ରକାଣ୍ଡ ଆକାର ଡାକ୍ତର ମେଘନାଦଙ୍କ ସ୍ଥିର ଦୃଷ୍ଟିରେ ସେହି ଆଶ୍ୱାସନା, ଯେ ଅବଶ୍ୟ କିଛି ଘଟିବ ।

କଣ ଘଟିପାରେ ? କଣ ବା ବାକି ଅଛି ଘଟିବାକୁ ? ଏଇ ଚିଲିକା କୂଳେ କୂଳେ ଭୂଇଁ କାଦୁଅ ହୋଇଛି ମଣିଷ ରକ୍ତରେ । ଦନ୍ତପୁର ଓ ଦନ୍ତପୁରୀ ବିଶ୍ୱବିଦ୍ୟାଳୟ, ଧର୍ମ, ସଂସ୍କୃତି, ଶାନ୍ତି, ଅହିଂସା, ହିଂସା, ଅତ୍ୟାଚାର, ବିଶ୍ୱାସ-ଘାତକତା, ମିଥ୍ୟା, ପାପାଚାର କଣ ନ ଘଟିଛି ଏଠି ! ଚିଲିକା ପାଣିରେ ମାଛଠୁ ବଳି ଏଠି କାହାଣୀ ସାଲୁ ସାଲୁ । ତଥାପି ଅଦ୍ଭୁତ କଣ ଘଟିବ ବୋଲି ସବୁ ସଚେତ ଅନ୍ଥି ଯାଇ ଅପେକ୍ଷା କରିଛି ।

ସଞ୍ଜ ଆହୁରି ପାଖକୁ ଲାଗି ଲାଗି ଆସିଲାଣି । ଚିଲିକା ଉପରର ଆକାଶ ଆଗଠୁ ଅନ୍ଧାର ପଡ଼ିଆସିଲାଣି । ପ୍ରାଗୈତିହାସିକ ଜନ୍ତୁମାନଙ୍କ ପରି କଳା କଳା ହୋଇ ପ୍ରକାଣ୍ଡ ପ୍ରକାଣ୍ଡ ରୁକ୍ଷ ପଥର ନାକ ଦେଖାଇ ଅଣ୍ଟା ଦେଖାଇ ଚିଲିକା ପାଣିରେ ଶୋଇ ରହିଛନ୍ତି । ଲାଗୁଛି ଦୂରରୁ ଅଗାଡର ବୋଇତ ମାଳ ମାଳ ଏଥର ଦିଗ୍‌ବଳୟ ଟପି କୂଳକୁ ମୋହିଁବାର ଦିଶିବେ । ଠିଆପାଲ ବୋଇତ ଲେଉଟି ଆସୁଥିବେ ଚୀନ ସାଗରରୁ ପରା । ଯାପ-ଆଢ଼ୁଆ ପାହାଡ଼ ଉପରେ ଯାପଶିଖା ତାଙ୍କ

ଆମନ୍ତ୍ରଣ କରିବ, କୂଳରେ ଆଉ ସାଧବ ବୋହୂମାନେ ତାଙ୍କୁ ବନ୍ଦାପନା କରିବେ। କ ଅବା ଘଣ୍ଟଘିଲା ପାହାଡ଼ ଉପରେ ପ୍ରକାଣ୍ଡ ଘଣ୍ଟ ବାଜଉଠିବ, ସଙ୍କେତ ଦେବ "ଏକାଠି ହୁଅ ପାଇକ ସେନା, ଏକାଠି ହୁଅ ।"

ଗୋଟିକିଆ କାଉଟିଏ ପାଣିକୁ ଲଗେ ନଳାଗେ ତଳେ ତଳେ ଉଡ଼ି ଉଡ଼ି ଫେରୁଛି । କଜଳପାତିଟିଏ ଖଣ୍ଡେ ଡଙ୍ଗା ଉପରେ ବସି ରହି ଗୀତ ଗାଇବାକୁ ଆରମ୍ଭ କଲାଣି । ଛୁଆଙ୍କ ମାନେ ପର ଟିକି ଟିକି ଚଢ଼େଇ ମେଞ୍ଚା ମେଞ୍ଚା ଆକାଶସାକ ବନ୍ଧେଇ ହୋଇ ଯାଉଛନ୍ତି । ଆଉ ମୁହୂର୍ତ୍ତିକୁ ଅଭ ବଣ୍ଟ କାହାନ୍ତି ଆକାଶରେ ମେଘ ମାଳ ମାଳ ଭାସି ବୁଲୁଛନ୍ତି । ପ୍ରକାଣ୍ଡ ପ୍ରକାଣ୍ଡ ଜାହାଜ ବୁଲୁଛି, ମଝିରେ ମଝିରେ ଆକାଶରେ ଏଠି ସେଠି ସଳଖ ନାଲି ଗାର, ସତେକି ଆକାଶର ନାଲି ସଡ଼କ । ତା ତଳେ ଧାଡ଼ି ଧାଡ଼ି ତାଳଗଛମାନ ଠିଆ ହୋଇଛନ୍ତି । କଳା କଳା ସରଳ ରେଖାମାନ, ତା ଆଗରେ କଳା ବାଦୁଡ଼ି, ଢେଙ୍କେଟାର ବାଦୁଡ଼ି ବ ନାହିଁ । ଅନ୍ଧାର ନଅଡ଼ ହୋଇ ମାଡ଼ି ଆସୁଛି । ଦଗ୍‌ବଳସ୍ତ ପାସେଇ ଆସୁଛି । ଏଥର ବସ୍ତୁ ଢ ଘୋଟିଯିବ ।

ବହୁତ ବେଳ ଗୁମ୍ ହୋଇ କଟିଲାଣି । ଗମ୍ଭୀର ଚେତନା, ସେହି ମାଡ଼ି ଆସୁଥିବା ଅନ୍ଧାର ପରି । ଏଥର ସେ ପୁଣି କଥା କହିଲେ ଡାକ୍ତର ମେଘନାଦ, ସମସ୍ତେ ବେଳ ଉତ୍କଣ୍ଠେଇ ଅନାଇଁ ରହିଲେ ସେପରିକି ଯାହାକୁ ଅପେକ୍ଷା ଥିଲା ସେହି ଏଥର ଆତ୍ମ ପ୍ରକାଶ କରିବ, ହଜିଥିବା କେଉଁ ଏକ ସ୍ୱପ୍ନ, କ ପାଇଁଣି । କ ଅବା ଏଥର ମାଲିକା ଫଳିବ, ସତ ଉପୁଜିବ, ମିଛ ଭେଦ ଛଳ କିଛି ରହିବ ନାହିଁ । କିନ୍ତୁ କଥା କହିଲେ ସେ - ଡାକ୍ତର ମେଘନାଦ, ଆଉ କହିଲେ ସେହି କଥା, ସେହି କଥା, ସେହି ଜାତି ଧ୍ୱଂସ ବେଳର କାହାଣୀ—

ଖଣ୍ଡାଏକ ଅଡ଼ି ବସିଲି, କହିଲି ଦେଖୁଚ ବେଦନା ହେବୁ, ବେଦନାଣ୍ଟିରେ ସବୁ ଦର୍ପଙ୍କ ଭିତରେ ରାଜା ହୋଇ ମନ ପାଉଁବୁ, କହେଲେ ହବୁ ଖରଷିଆ, ମରି ମରିକିଆ କାହିଁକି ? ସେ ଇଂରେଜୀ ପାଠକୁ ଆପଣାଠୁଁ ଦୂରେଇ ରଖିଲି, କହିଲି ପିରଙ୍ଗି ପାଠର ଅକ୍ଷର ଚୋରୁ ମୁଣ୍ଡମୁଣ୍ଡିଆ ଗଳପଶ; କହିଲି ଯେ ମୋର ରାଜ୍ୟ ନେଲା, ଜାତିକି ନେଲା, ମୋ ଖାଉଥାଇ ଛଡ଼େଇ ନେଲା, ତା ଭାଷା ଫେର୍ ମୁଁ ଶିଖିବ । ତା କବଳରୁ ଫେର ମୁଁ ଯିବ, ଗୁଜରି କର । ରଜା ହୋଇଥିଲି । ପରଜା ହୋଇ ହଳ ଧରିବ ସେ ଭଲ, ଇଂରେଜ ପାଖରେ ଗୁଜରି କରିବାକୁ ଯାଇ ପାରିବ ନାହିଁ । ବଢଗଲା ଏମିତ ଢଙ୍ଗ ପୁରୁଷ, ସେ ଇଂରେଜ ପାଠ ପଢ଼ିଲା ନାହିଁ କ ପୁରୁଣା ଓଡ଼ଶୀ ପାଠ ପଢ଼ିବାକୁ ପାଇଲା ନାହିଁ । ସେ ଅବର୍ତ୍ତିତ ହେଲା ଏକ ନୂଆ ରୂପରେ, ସେ ଚାଷୀ । ଯେଉଁ ଓଡ଼ ବୋଲନ୍ତେ ରଜା ବୋଲାଉଥିଲା, ସେ ଓଡ଼ ହେଲା ଖାଲି ଚାଷୀ । ତାର ବୁଦ୍ଧି ବା ସେହି ଅନୁରୂପ ହୋଇଗଲା ।

ସେହି ବୁଦ୍ଧି କଥା କହୁଛି ବର୍ତ୍ତମାନ । ଦ ସମୁଦ ହାଟରୁ ପଟେ ଲେଖା ବଅଳ କିଣି ଯାଉଥିଲେ, ଅମ ଗାଁ ଦଳବେହେରା ହରି ଯୁଝାର ସିଂ ଆଉ ତାଙ୍କ ଗାଁ ଦଳବେହେରା ରାଘବ ଉଠାଣ ସିଂ । ଦଳବେହେରା ବୋଲନ୍ତେ ଗାଁର ମୁଖିଆ ନେତା, ପୁଣି ହଜାର ଲଢ଼ୁଆ ପାଇକଙ୍କ ଉପରେ ସର୍ଦ୍ଦାର । ସେତେବେଳକୁ ବହିଁକାବହେଁ ଇସ୍କୁଲ ଆଉ ଇଂରେଜି ପାଠକୁ ବଏକଟ୍ କରି ଆପେ ହୋଇଛନ୍ତି ଟିକା ଚନ୍ଦ୍ର ମହାନନ୍ଦ । ହେଲେ ଚେହେରାଟି ମାନୁ ଥାଏ, କ ବରକୁଳର କେତୁ ମଙ୍ଗରାଜ ତାଙ୍କ ଆଗରେ, ଏତେ ମୁର୍ଖ; ଏତେ ଗାଲ ଏତେ ଜଣ । ଇଂରେଜ୍ ତାଙ୍କ ଜାତିର ଛଡ଼େଇ ନେଇଥାଏ ସିନା, ଚେହେରା ବାଗେଇବା ତ ଜଣା ନ ଥାଏ, ଜାମ ଭିତରେ ତ ଖାଲି ବୃଷ୍ଟ କରିବା ଆଉ ଗାଁରେ ଆସି ପଥର ଟେକିବା, ଖଣ୍ଡା ନହଡ଼ା ଖେଳିବା, ଦଣ୍ଡ ସାଧନ ଭାଙ୍ଗିବା; ଦେହ ଠିକ୍ ଥାଏ । ମସ୍ତ ବଡ଼ ବଡ଼ ବଳଦ ପଟେ ଲେଖାଁ କିଣି ଫେରୁଥାନ୍ତି । ଇଞ୍ଜିନପୁର ପାଣ ନଈ ପୋଲ ହେଲ, ମୁଣ୍ଡ ଉପରେ ଖରା, ଭେକରେ ହଂସା ଉଡ଼ିଲ । ବହିଁଙ୍କ କାନ୍ଧରେ ଗାମୁଛା, ଗାମୁଛାରେ ପାଖେକେ ଚୂଡ଼ା ଓଳପା ଲେଖା ବନ୍ଧା ହୋଇଛି ତ ଆର ମୁହଁରେ ଗଣ୍ଠିରି ହୋଇଛି ଲୁଣ, ଲଙ୍କା ଓ ଆମ୍ବୁଲ । ଠିଆ ଠିଆ ଚୂଡ଼ା ଗଣ୍ଠିରିମାନ ପାଣିରେ ଭିଜେଇ ନେଲେ । ଖାଇବାକୁ ଗଲାବେଳେ ମନେ ପଡ଼ିଲା, ଆରେ ଏ ବଳଦ କୋଉଠି ରହିବେ ? ଯୁଝାର ସିଂ ବୁଦ୍ଧି ପାଞ୍ଚିଲେ, ବଳଦ ପଘାକୁ ନେଇ ଆପଣା ଗୋଡ଼ରେ କସିକରି ବାନ୍ଧିଲେ । ସମୁଦଙ୍କ ଦେଖା ଦେଖି ଉଠାଣ ସିଂ ବି ଅବିକଳ ସେଇଆ କଲେ । ଆପଣା ବୁଦ୍ଧି ବିଚକ୍ଷଣତା ଭାବି ଦ ସମୁଦ ପେଟେ ହସାହସି ହେଲେ । ତା ବି ବେଶୀ ସମୟ ନୁହେଁ, ପାଟିରେ ଚୂଡ଼ା ଗୁଣ୍ଡା, ହସିବାକୁ ଜାଗା ନାହିଁ । ଗୃହୁଁ ଗୃହୁଁ କଟକ ଓଳପା ଓଜନର ଚୂଡ଼ା ଜଣ ଜଣକେ ଶେଷ କରି-ଦେଲେ । ପୁଣି ଯୁଝାର ସିଂ ମନେ ପକାଇଲେ: ଚୂଡ଼ା ତ ସରିଲା ଆଉ ପାଖେ ଆମ୍ବୁଲ, ଲୁଣ ଲଙ୍କା ଚହଟିଲା ଯେ । ସେ ପାଖ ଗଣ୍ଠିରି ଖୋଲି ଦେଇ ଆମ୍ବୁଲରେ ମନ ଲଗାଇଲେ । ଅମ୍ବୁଲ ସୁଆଦ ଲାଗିଲା, ଯୁଝାର ସିଂ ଆମ୍ବୁଲ ଚେନ୍ତ ଚେନ୍ତ ବସି ବସିକା ଟାକରା ଫଟା .ଲେ । ଏପର୍ଯ୍ୟନ୍ତ ତାଙ୍କ ବଳଦଟି ନିଶ୍ଚିନ୍ତ ଥିଲା । କିନ୍ତୁ ଯେମିତି ସେ ଟାକରା ଫଟାଉଛନ୍ତି ସେମିତି ସେ ବଳଦ ମାରିଲା ଡିଆଁ । ଯୁଝାର ସିଂ ଚିତ୍କାର କରୁଥାନ୍ତି—"ସମୁଦ ରଖ ରଖ ମଲେଗଲି ମରିଗଲି ।" ସମୁଦଙ୍କ ବି ସେହି ଦଶା, ସେ ବି ଅମ୍ବୁଲ ଖାଇ ଟାକରା ଫଟାଉଥିଲେ । ବଳଦ ପଛେ ପଛେ ବହଡ଼ରେ ବନ୍ଧା ହୋଇ ମାଟି ପଥର ଅଣ୍ଡା ଉପରେ ଘୋଷରା ହୋଇ ହୋଇ ବହିଁକାବହେଁ ଗଡ଼ଗଡ଼େଇ ଗଡ଼ଗଡ଼େଇ ଧୂଳିଛନ୍ତି । ସେ କହୁଛି ସମୁଦ ରଖ, ସେ କହୁଛି ସମୁଦ ରଖ, ବଳଦ ଦଉଡ଼ୁଛନ୍ତି ଏକାଥରେ ତାଙ୍କ ଖାମିନ୍ଦଙ୍କ ଘରମୁହାଁ ।

ସେଠି ଏତେ ପଥର କୁଣ୍ଡ ଟେକିବା ସାଧନ ଖୋଜିବା, ପାଇବାକୁ ଭରସା କିଛି କାମ ଦେଲା ନାହିଁ । ସେହି ତ'ସମ୍ଭବ ପୁଣି ମାଳ ଘରେ ଜନମ ହୋଇଥିଲେ, ଉଠାଣ ସିଂଙ୍କ ବାପେ ଭଟୋଇ ମାଣ୍ଡ ହାତରେ ଦଶ ଗୁଣ୍ଡ ମାଠିଆ ବାହୁରେ ଧରି ଆଉ ଗୋଟାଏ ଗୁଣ୍ଡ ମାଠିଆ ଏକାଠି ଟେକୁଥିଲେ ତ ମୁକ୍ତାର ସିଂଙ୍କ ବାପେ ଚଢ଼ ଲଗା ଶଗଡ଼ର ଅଖକୁ ଅଣ୍ଟାରେ ସମତୁଲ କରିଥିଲେ, ଶଗଡ଼ ଚକାକୁ ହାତରେ ଟେକୁଥିଲେ, ଦେହପାଇ ପଥରରେ ଛେଚ ହେଉଥିଲେ । ହଠାତ୍ ଅନ୍ଧାର ଘୋଟିଗଲା । ଘୁଡ଼ୁଁ ଘୁଡ଼ୁଁ ବରଷା ପଡ଼ିଲା । ବିଜୁଳି ତା ପରେ ହାପ ଶୁଣି ପର ଗଲ ଗଲ । ପବନ ବେଗ ବଢ଼ି ବଢ଼ି ଚାଲିଲା । ମେଘନାଦ ଉଠି ଠିଆ ହେଲେ, ସେତେବେଳକୁ ସେ ଅଧା ଜଡ଼ ବୁଡ଼ ହେଲେଣି । ଆଉ ପାଲଟା ସିଂ, ପାନ୍ତୁଲା ସିଂ ପାହାଡ଼ ସିଂ, ରଣ ସିଂ, ଭଦ୍ଦଲ ସିଂ, ଛୁଅଳ ସିଂ, ଅଂଗାର ସିଂ, ଜସୁ ସିଂ, ସମ୍ବର ସିଂ, ବାଘ ସିଂ, ସବୁ ସିଂହପାଇ ଧରଦର ଜଡ଼ ବୁଡ଼ ହୋଇ ଦେହ ଶୀତେଇ ଶୀତେଇ ଉଠି ଠିଆ ହେଲେ । ଚାଳ ଘର ମାଟି ପିଣ୍ଡା, ଉପରୁ ଗଳୁଛି । ଛାତ ପଡ଼ୁଛି କି ଉଠୁଛି । ସାନ ଝିଙ୍କ ପରି ପବନଟାକୁ ଖୋଲିଖାଲି କିଛି ଦେଖିପାରି ମେଘନାଦ କହିଲେ, ଚାଲ ଆପଣା ଆପଣା ଘରକୁ ଫେରିବାକୁ ପଡ଼ିବ, ଏ ଜଣାଯାଉଛି ଚିଲିକା କୂଳଆ ଝଡ଼ପାଗ ଧରିଲା, କେତେବେଳେ ବଢ଼ିବ, ତେଣେ ଘର ଚାଲ ବି ଉଡ଼ିଯିବ, ପାଣିକି ଭରସିକରି ନ ଓହ୍ଲେଇଲେ ଏମିତ ବସିଥିବା । ସେମାନେ ଅନ୍ଧାର ଓ ବରଷାରେ ମିଶିଗଲେ । ସେଥିରେ ବୀରତ୍ୱ ନଥିଲା । ଖାଲି ଆତଙ୍କହିଁ ଥିଲା ।

ବରଷା ଲାଗି ରହିଲା । ଏଥିପାଇଁ ଯେପରିକି ଚିଲିକା ସମେତ ସମସ୍ତ ପ୍ରକୃତି ଅପେକ୍ଷା କରି ରହିଥିଲା ।



# ପରିଚୟ

**ଶ୍ରୀ କିଶୋରୀଚରଣ ଦାସ**

ଶଶିଶେଖର ବାବୁ ବିଶ୍ରାମ ନେଉଛନ୍ତି । ଦିନ ଭିତରେ ଏଇ କେତୋଟି ମୁହୂର୍ତ୍ତି । ପିଲାପିଲିଙ୍କ ଜଞ୍ଜାଳ ନାହିଁ । ଗୃହିଣୀଙ୍କ ଅଭିଯୋଗ ନାହିଁ । ପାଣିପାଗ 'ବି' ଅନୁକୂଳ । ଆଉ କିଛିଏ ପରେ ଘଣ୍ଟା ମାଡ଼ ଆସିବ ଓ ତା' ପରେ ଆରମ୍ଭ ହୋଇଯିବ ପୁରୁଣା ଧନ୍ଦିକାଣ ।

କିନ୍ତୁ ଆଜ ମନଟା ଆରାମ ନେବାକୁ ଚାହୁଁ ନାହିଁ । ମନ୍ଥାଳ ଘୂରୁଛି ଅତୀତ ଓ ଭବିଷ୍ୟତ । ଭାବନା ଛିଣ୍ଡୁ ନାହିଁ । ଦୋହରାଇ ଦୋହରାଇ ପୁଣି ସିଅ ଧରୁଛି ସେଇ ପୁରୁଣା କଥା ଓ ତା'କୁ ପୁଣି ନଠେଇ ଦେଖୁଛି ନୂଆ ରୂପରେ ।

ଶଶୀବାବୁ । ପଚାଶ ବର୍ଷ ବୟ ଦେହରେ ଛାପ ରଖିଦେଇ ଯାଇଛି । ମୁଣ୍ଡରେ ବାଳ ଅଧେ ଧଳା । ପ୍ରଶସ୍ତ ଲଲାଟରେ କେତେଗୁଡ଼ିଏ କୁଞ୍ଚିତ ରେଖା । ଦୀର୍ଘ ହାତର ଆଙ୍ଗୁଳିରେ ଶୂନ୍ୟରେ ରେଖା କାଟିଲାବେଳେ ହାତର ଶିରାଗୁଡ଼ିକ ବେଶ୍ ପରିଷ୍କାର ଜଣାପଡ଼ି ଯାଉଛି ଓ ଦିଶିଯାଉଛି ହାତର ଲମ୍ବା ଲମ୍ବା ଗୋଜିଆ ନଖ— ପିଲାଦିନେ ହାତଦେଖାଳି ସାଙ୍ଗମାନେ କହୁଥିଲେ 'ଆର୍ଟିଷ୍ଟିକ୍' ।

ଶଶୀବାବୁ କାନ୍ଥ ଆଡ଼କୁ ଅନେଇଲେ । କେଉଁ କାଳର ପୁରୁଣା ଫଟୋ ଖଣ୍ଡେ ଟଙ୍ଗା ହୋଇଛି । ଭିତର ଛବିଟା ହଳଦିଆ କଳରୁ ଧଳା ହୋଇ ଆସିଲାଣି । ଖାଲି ଦିଶୁଛି ଗୋଟିଏ 'ପୁରୁଣାକାଳିଆ କୋଟ୍ ଓ ତା ଉପରକୁ ମୁହଁଟିଏ । ସେଇ ମୁହଁରେ ଯୋଡ଼ିଏ ତୀକ୍ଷ୍ଣ, ଜାଗ୍ରତ ଆଖି । ଶଶୀବାବୁ ସେଇଆଡ଼କୁ ଅନେଇ ରହିଲେ କେତେବେଳଯାଏ ।

ଶଶୀବାବୁ ଅନେଇ ରହିଲେ ଓ ଆଶ୍ଚର୍ଯ୍ୟ ହେଲେ । କେତେଥର ତ ସେ ଏହି ଘରେ, ଏଇ ଚଉକିରେ ବସିଛନ୍ତି । କାହିଁ, ସେ ଆଖି ଦୁଇଟି କେବେ ତ ତାଙ୍କ ଦୃଷ୍ଟିରେ ପଡ଼ିନାହିଁ । ଆଜ କାହିଁକି ହଠାତ ସେଗୁଡ଼ିକ ଏତେ ସଜୀବ ହୋଇ ଉଠିଛନ୍ତି ଓ ତାଙ୍କର ମୁହୂର୍ତ୍ତିଗୁଡ଼ିକ କାହିଁକି ସେଥିରେ ବାନ୍ଧି ହୋଇଯାଉଛି ଏମିତି ? ସତେ ଯେମିତି ସେହି ବୃଦ୍ଧାଣୀ କ'ଣ ଉତ୍ତର ଖୋଜୁଛି । ବହୁତ ଦିନର ଅଲୋଡ଼ା ଉତ୍ତର ।

ସେ ଥିଲା ଶଶୀବାବୁଙ୍କ ଟୋକାବେଳର ଫଟୋ । ସେଇ ଛବିର ଦୃଷ୍ଟି ଆଜ ତାଙ୍କର ଚଳିକୁ ଆକ୍ରମଣ କରି ବୋଧହୁଏ ପଚାରିବାକୁ ଚାହୁଁଛି—'ଏଇ କ'ଣ ସେଇ ଶଶୀ ? ଆଜିକାଲି ଶଶୀବାବୁ କ'ଣ ସେଇ ପୁରୁଣା ଶଶୀର ଯଥାର୍ଥ ବଂଶଧର ?'

ଏମ୍. ଏ. ପାସ୍ କରିଥିଲେ ସେତେବେଳେ । ରାସ୍ତାର ଛକ ଉପରେ ମଣିଷ ଗହଳି ଭିତରେ ଛିଡ଼ା ହେଲେ ସେତେବେଳେ ଲାଗୁଥିଲା ଯେ ସେ ସେମାନଙ୍କଠାରୁ ଅଲଗା । ସେ ନିଜେ ତାକୁ ବାଟ କଢ଼େଇବେ । ତାଙ୍କର ସ୍ପର୍ଶରେ ସେମାନେ ଗଢ଼ି ହୋଇଯିବେ । ଜୀବନଟା ବହୁତ ପଡ଼ିଛି । ସୁଧାଂଶୁ ଆଖି ଦୁଇଟା ବହୁତ ଦୂରକୁ ଦେଖିପାରୁଛି । କେତେ ନୂଆ ରାଜ୍ୟ, ନୂଆ ସଂସାର, ନୂଆ ଅନୁଭୂତି । ସେସବୁକୁ ସାଉଣ୍ଟି ନେବେ ଓ ବାଣ୍ଟିଦେବେ ଅନ୍ୟମାନଙ୍କୁ ନିଜର କିଛି ମିଶାଇ । ସମସ୍ତେ ଖୁସି ହେବେ ଓ ସେ ନିଜେ ହେବେ ବଡ଼ ।

ଗୋଟାଏ ପ୍ରେସ୍ ଗଢ଼ିବେ । ଖବରକାଗଜ ବାହାର କରିବେ । ତାଙ୍କର ବୁଦ୍ଧିର ପାକ୍ଷିକତାରେ ନୂଆ ନୂଆ ଚମକପ୍ରଦ ଅଭିମତ ଦେଇ ଲୋକମାନଙ୍କୁ ମୁଗ୍ଧ କରିବେ । କମ୍ବା ଖୁବ୍ ଜଣେ ନାମୀ ଓକିଲ । ଗୋଲ୍ଡ ଫ୍ରେମ୍‌ର ଚଷମା ଆଖିରେ ସଜାଡ଼ି ସଜାଡ଼ି ଶାଣଦିଆ କଥାରେ ଆଇନ ଗଢ଼ୁଥିବେ, ଭାଙ୍ଗୁଥିବେ । ଦେଖଣାହାରି ଥା' କରି ଚାହିଁଥିବେ । ପାଖ ଓକିଲ ଈର୍ଷା କରୁଥିବେ ।

କମ୍ବା ଏମିତି ବହୁତ କିଛି । ଯେଉଁଥିରେ ଲୋକେ ସମ୍ମାନ କରିବେ । ଶହେ ଲୋକ ଭିତରେ ଜଣେ ହୋଇ ଛିଡ଼ା ହୋଇ ହେବ ।

କିନ୍ତୁ ତା' ହେଲା ନାହିଁ କାହିଁକି ? ଘ୍ରୁକାଶର ସୀମା ଭିତରେ ରହି ଖାଲି ଟଙ୍କା କିଛି ଜମେଇ ହେଲା । ନିର୍ଦ୍ଦିଷ୍ଟ ପରିସର ଭିତରେ ଟିକିଏ ହାକିମପଣିଆ କରିହେଲା ।

କିନ୍ତୁ ତା' ଛଡ଼ା ? ଚନ୍ଦ୍ରକୁ ହାତ ବଢ଼େଇବାର ସେ ଆକାଙ୍କ୍ଷା ଗଲା କୁଆଡ଼େ ? କିଛି ନଥିଲେ ମଧ୍ୟ ଆଗକୁ ମିଳିବ—ଆଖି ଦୁଇଟା ସବୁବେଳେ ଚାହିଁଥିବେ କେଉଁ ସୁବର୍ଣ୍ଣ ଦୀପ ଆଡ଼େ, ସେ ଭାବ ହଜିଲା କେଉଁଠି ?

ଆଜି ବେଶି ଦୂରକୁ ଚାହିଁ ହେଉନାହିଁ । ଆଉ ଏଗୁଡ଼ିଏ ବର୍ଷ ଅଛି । ଏତିକି ବଡ଼ ହେବ । ସେତିକିରେ ମୁଣ୍ଡି ମାରିବ । ତା' ପରେ ପେନ୍‌ସନ୍, ସଂସାରରୁ ପେନ୍‌ସନ୍ ନେଲା ପୂର୍ବରୁ ପ୍ରସ୍ତୁତ ହେବା ପାଇଁ କେଇଟା ଦିନ । ବେଶ୍ ।

ଏଥିପାଇଁ କ'ଣ ସେ ଜନ୍ମ ହୋଇଥିଲେ ? ଫୋଟୋ ଆଡ଼କୁ ଅନେଇ ରହିଲେ ଶଶୀବାବୁ । ସତରେ ଏ' କ'ଣ ତାଙ୍କର ଫଟୋ ?

ଏ କ'ଣ ସେଇ ଶଶୀ ?

ପାଖରେ ଥିବା ସବୁଜ କ୍ଷେତର ଛବି, ଜଳପ୍ରପାତର ଛବି, ବଙ୍କିମ୍ ବଣର ଫଟୋ—ଜବାହରଲାଲ୍‌ଙ୍କର ମୂର୍ତ୍ତି ସବୁ ଯେମିତି ସାଦା କାନ୍ଥରେ ମିଶିଗଲା । ସମସ୍ତଙ୍କର ବୈଶିଷ୍ଟ୍ୟ ନେଇ ସେଇ ପୁରୁଣା ଫଟୋଟାରେ ଥିବା ଯୁବକର ଆଖି ଦୁଇଟା ଚାହିଁ ରହିଲା ତାଙ୍କର ଆଡ଼େ ।

ବୁଢ଼ା ଶଶୀବାବୁଙ୍କର ଆଖି ଦି'ଟା ଛଳ ଛଳ ହୋଇ ଉଠିଲା । ଆଜିର ଏଇ ଜବରେଲା ଖସ୍ତବେଳରେ ତାଙ୍କର ଦୁର୍ବଳତା ବୋଧହୁଏ ଆଉ କାହା ଆଖିରେ ପଡ଼ିବ ନାହିଁ । ଆଜି ସେ ନିଜକୁ ନିଜେ ।

ଅତୀତ ଆଜି କାଘ କରି କହୁଛି—ମୁଁ ହସିପାରି ଥାନ୍ତି, ମୁଁ ଫୁଟି ପାରିଥାନ୍ତି । କିନ୍ତୁ ଆଉ ସମସ୍ତ ନାହିଁ । ଆଉ କିଛି ହୋଇ ପାରିବ ନାହିଁ । ବର୍ତ୍ତମାନର ଏଇ ଜୀର୍ଣ୍ଣ ଖୋଳ ଭିତରୁ ମୋର ସୁନାର ଆତ୍ମାଟି ଆଉ ବାହାରି ପାରିବ ନାହିଁ । ସେ ସେଇଥିରେ କାନ୍ଦ, ବାହୁନ ସଢ଼ି ଯିବ ।

ସେଇ ପ୍ରକ୍ଷଣ ଆଖି ଦୁଇଟା ଯୁହିଁ ରହିଛି ଯେମିତ । ବୋଧହୁଏ ଆଜିର ଏଇ ଶେଷ ମଳିନ ଆଖିରୁ ଯୁହୁଁଛି ଲୁହର ପ୍ରତିଦାନ ।

ଶଶୀବାବୁ ତଳକୁ ମୁହଁ ପୋତି ଟେବୁଲ୍ ଆଡ଼କୁ ଅନେଇଲେ ।

ଟେବୁଲ୍ ଉପରେ ପଡ଼ିଥିଲା ପିଟା ହୋଇଥିବା ଖଣ୍ଡେ ଲଫାପା ।

ସେଇ ଲଫାପା ଉପରେ ଆଖି ପଡ଼ିବାକ୍ଷଣି ଶଶୀବାବୁଙ୍କର ବିରକ୍ତ ଆସିଲା । ସେ ହାତରେ ସେଇ ଲଫାପାଟିକୁ ଧରି ମୋଡ଼ମାଡ଼ି ଫିଙ୍ଗିଦେବାକୁ ବସିଲେ ।

ନା—ନା, ଅଯଥା ବିରକ୍ତ ହୋଇ ମୋର ଆଉ କେତୁଟା ବର୍ଷର ପରମାୟୁକୁ କମେଇବି କାହିଁକି ? ଶଶୀବାବୁ ପୁଣି ଚିଠିକୁ ଯଥାସ୍ଥାନରେ ରଖିଦେଲେ ।

କିନ୍ତୁ ବିରକ୍ତି କମିଲା ନାହିଁ । ବର୍ତ୍ତମାନର ଅନୁଶୋଚନା ସେ ବିରକ୍ତିକୁ ଇନ୍ଧନ ଯୋଗାଇଲା ।

ସେ ଥିଲା ଜୟନ୍ତର ଚିଠି । ଜୟନ୍ତ ଶଶୀବାବୁଙ୍କ ବଡ଼ ପୁଅ । ସେ ଜୀବନସାକ ବାପାଙ୍କର ଅବାଧ ସନ୍ତାନ ହୋଇ ଆସିଛି ଓ ସେଇଥିରେ ଅନୁଭବ କରିଛି ଗର୍ବ ଓ ଆତ୍ମମର୍ଯ୍ୟାଦା । ଆଜି ଏଇ ଚିଠିହେଉଛି ସେଇ ଅବାଧତାର ଅନ୍ୟତମ ନମୁନା । ପାଠଶାଠ ଅଧାରୁ ସାରି ଜୟନ୍ତ ବାହା ହେବାକୁ ମନ କରିଛି । କିନ୍ତୁ ତା' ଚିଠିରେ ସେ ଯେଉଁ ପ୍ରସ୍ତାବ ଦେଇଛି, ସେ ଜାଣେ ବାପା ସେଥିରେ ବାପା କେବେ ହେଲେ ରାଜି ହେବେ ନାହିଁ । କାରଣ ଝିଅର ବାପ କେବଳ ଜାତି, କୁଳରେ ଶ୍ରେଷ୍ଠ, ତା' ନୁହେଁ ସେ ମଧ୍ୟ ତାଙ୍କ ଶୁଭକାଙ୍କ୍ଷୀଙ୍କ ମଧ୍ୟରୁ ଜଣେ ନୁହେଁ । ପୁଣି ଜୟନ୍ତ ଯେ ନିହାତି ଭଲପାଇ ବାହାହେବାକୁ ଯାଉଛି, ତା' ମଧ୍ୟ ନୁହେଁ । ଏ ଖାଲି ଗୋଟାଏ ଜିଦ୍, ଖିଆଲ୍ ? ଏହି ଖିଆଲ୍ ଅସ୍ୱାଭାବିକ ଆଗ୍ରହ ଜୟନ୍ତ ଜୀବନରେ ବଡ଼ କଥା । ତା' ମତରେ ସେଇ ହେଉଛି ଆଡ଼ମ୍ବରର — ଜୀବନର ପ୍ରକୃତ ରସ ।

ସେ ଚିଠିର ଶେଷରେ ଏଇ ଦୁଇ ଲାଇନ୍ ଲେଖାଥିଲା ମୁଁ ଜାଣେ ଆପଣ ଏଥିରେ ରାଜି ହେବେ ନାହିଁ କିନ୍ତୁ ତଥାପି ମୁଁ ସେଠି ବାହାହେବାକୁ ଚାହେଁ

ଓ ମୋ ଜୀବନର ସୁଖସ୍ୱାଚ୍ଛନ୍ଦ୍ୟ ବିଷୟରେ ମୁଁ ବେଶୀ ସଚେତନ ବୋଲି ମୋର ବିଶ୍ୱାସ ।”

ଶଶୀବାବୁ ଚିଠି ଖଣ୍ଡିକ ଆଗରୁ ପଢ଼ିଥିଲେ । ମନେ ମନେ ରାଗିଥିଲେ ଖୁବ୍ । କିଛି ଉତ୍ତର ଦେବେ ନାହିଁ ବୋଲି ଠିକ୍ କରିଥିଲେ । ବର୍ତ୍ତମାନ ସେଇ ଚିଠି ଖଣ୍ଡିକ ପୁଣି ତାଙ୍କର ଆଖିରେ ପଡ଼ିବାରୁ ତାଙ୍କ ମନ ଆତୁର ଭାବ ଉଠିଲା ।

ଶଶୀବାବୁ ପଚାରିଲେ ନିଜକୁ—କିଏ ଏମାନେ ? କାହିଁକି ଏମାନେ ଆସିଲେ ତା’ଙ୍କ ଜୀବନରେ ? କିଏ ଏ ଜୟନ୍ତ, ରଜତ, ସତ୍ୟ ? ଏଇମାନଙ୍କ କଥା ଭାବି ଭାବି, ଏଇମାନଙ୍କର ସୁଖସ୍ୱାଚ୍ଛନ୍ଦ୍ୟର ଉପାୟ ଖୋଜି ଖୋଜି ତାଙ୍କର ସାରା ଜୀବନ ବିତିଗଲା । କିନ୍ତୁ ସେଥିରେ ଲାଭ ହେଲା କଅଣ ? ତାଙ୍କ ଯୌବନର ସବୁ ଆଶା, ଆକାଙ୍କ୍ଷା, ସ୍ୱପ୍ନ ଉଭେଇ ଯାଇ ତା’ ବଦଳରେ ଛିଡ଼ା ହେଲେ ଏଇମାନେ । ସେ ତାଙ୍କର ପାଇଁ ନିଜର ସବୁ କିଛି କ୍ଷୟ କଲେ । ସେଥିରେ କାଁ ନିଜର କିଛି ଉନ୍ନତି ହେଲା ନା ସଂସାରର ? ଆକର୍ଷଣ ? ହଁ,—କିନ୍ତୁ ସେଥିରେ ସୁଖ, ନାହିଁ ଅଛି ଅଶାନ୍ତି । ଖାଲି ନିଜର ବୋଲି ଆବୁରି ବସିବା, ନିଜର ନିଜର କହି ପ୍ରକୃତ ନିଜତ୍ୱକୁ ବଳି ଦେବା, ଏହାଠାରୁ ବଳି ମୂର୍ଖତା ଆଉ କଣ ଥାଇପାରେ ? ଶଶୀବାବୁଙ୍କର ହସିବାକୁ ମନ ହେଲା । ପିଲାମାନେ ଅସୁନ୍ଦର ହୁଅନ୍ତୁ, ଅବାଧ ହୁଅନ୍ତୁ, ନିର୍ବୋଧ ହୁଅନ୍ତୁ, ତଥାପି ସେମାନଙ୍କର ରୋଗଶୋକରେ ଲୁହ ବୁହାଇବା, ସେମାନଙ୍କର ମଲି କନିଆ, କୋଳାହଳ, ଅବାଧତାରେ ବିରକ୍ତ ହୋଇ ମଧ୍ୟ ସେମାନଙ୍କୁ ଛୁଡ଼ି ନିଃସଙ୍ଗ ମନେ କରିବା, ଏହାର ମାନେ କଅଣ ? ହୁଏତ ତା’ର ମାନେ ଏଇ ଯେ,ତାଙ୍କର ନିଜକୁ ନେଇ ଖୁସି ହେବାର, ଭାବିବାର, ଗର୍ବ କରିବାର ଆଉ କିଛି ନାହିଁ । ଓଃ ! ଏଇମାନଙ୍କୁ ନେଇ ତାଙ୍କର ଜୀବନର ରଙ୍ଗୀନ ସକାଳ ଧୂଳି ଧୂସର ହୋଇ ହାରିଯାଇଛି । ଆଜି ପଛକୁ ଆଖି ଫେରାଇଲେ ନିଜ ପାଇଁ ଦୁଃଖ ଆସୁଛି-ଲଜ୍ଜା ।

କାହିଁକି ଏମିତି ହେଲା ? ସେ କ’ଣ ଦରି ଆଣିଥିଲେ ଏମାନଙ୍କୁ ? ସେ କଅଣ ଚାହିଁଥିଲେ ଜୟନ୍ତ ବୋଲି ଜଣେ ଏମିତି ଗୋଟିଏ ରୂପ, ଗୁଣ ବିଶିଷ୍ଟ ଲୋକ ତା’ଙ୍କ ଜୀବନକୁ ଆସିବ ? ଅନ୍ୟମାନଙ୍କ ଆସିବାକୁ ସେ ତ ଲୋଡ଼ି ନ ଥିଲେ ମୋଟେ ! ଯେଉଁମାନଙ୍କର ଆଗମନ ଆକସ୍ମିକ, ଅଲୋଡ଼ା ଓ ଅନାକାଙ୍କ୍ଷିତ ସେମାନଙ୍କ ‘ନିଜର’ ‘ନିଜର’ ବୋଲି ତାଙ୍କରପାଇଁ ବିନିଦ୍ର ହେବା, ଏଭଳି ଅସଙ୍ଗତ ପ୍ରହସନରେ ସେ ଭାଗୀ ହେଲେ କାହିଁକି ? ଦୁନିଆର ନିୟମ, ସମସ୍ତେ କହିବେ । କିନ୍ତୁ ତା’ର କ’ଣ ଅଧିକାର ଥିଲା ତାଙ୍କର ସ୍ୱତନ୍ତ୍ର ବ୍ୟକ୍ତିତ୍ୱକୁ ବାନ୍ଧିଦେବ ଏମିତି ?

ଶଶୀବାବୁ ଚଉକିରୁ ଉଠି ଦୁଇ ହାତ ପଛରେ ଛନ୍ଦି ଅସ୍ଥିର ସ୍ୱରରେ ବୁଲିବାକୁ ଲାଗିଲେ । ତା ପରେ ଛିଡ଼ା ହୋଇ ପୁଣି ଅନେଇଲେ ସେଇ ଫଟୋ ଆଡ଼କୁ ।

ଆଉ କ'ଣ କିଛି ଉପାୟ ନାହିଁ ? ଯାହା ହୋଇ ପାରିଲା ନାହିଁ, ତା କ'ଣ ଆଉ କେବେ ହୋଇପାରିବ ନାହିଁ । ଜୀବନଟା ଏତେ ଶ୍ରେଷ୍ଠ ହେଲା କାହିଁକି ? ମୋଟେ ତିରିଶି ସତୁରିଟା ବର୍ଷ । ସେଥିରେ କଣ ଭଲ ହୁଅନ୍ତା ?

ଫଟୋ ଆଡ଼କୁ ଅନାଇଲେ । ଲମ୍ବା କାମିଜ ଉପରେ କାଳିଆ କୋଟ୍ ଖଣ୍ଡେ ପିନ୍ଧା ହୋଇଛି । କୋଟରେ କୋତାମ ଅଛି ଲମ୍ବା ଖୋଲା କଲର ତଳେ ପେଟ ଉପରକୁ । କୋଟ୍‌ରେ ତଥାପି କୋଣିଆ ନ ହୋଇ ଗୋଲ୍ । ସେତେବେଳେ ସେଇଟା ଥିଲା ଫେସନ । ବର୍ତ୍ତମାନ ଲୋକ ଦେଖିଲେ କହିବେ ମରହଟ୍ଟି— ଉନବିଂଶ ଶତାବ୍ଦୀର ! କୋଟର ପକେଟ୍‌ରୁ ରୁମାଲ ଉଙ୍କି ମାରୁଛି । ତା ଉପରେ ଗୋଟିଏ ବଡ଼ ଫୁଲ୍ ଅଙ୍କା ହୋଇଛି । ସେତେବେଳର ରୁଚି ନମୁନା ।

'ହାୟ' ପଦରେ ମନର ସବୁ ପ୍ରତିକ୍ରିୟା ଶେଷ କରିଲା ବେଳକୁ ଶଶୀବାବୁ ଭାବିଲେ—ହଁ, ଆଜି ରୁଚି ବଦଳିଛି, ଫେସନ ବଦଳିଛି । କିନ୍ତୁ ସେଇ ଆଖିର ଉଜ୍ଜ୍ୱଳତା, ସେଇ କଳ୍ପନାର ସ୍ୱରୂପ କ'ଣ ପ୍ରତ୍ୟେକ ଯୁବକର ନାହିଁ । କିଛି ଗୋଟାଏ କରିବ—କିଛି ଗୋଟାଏ ଅଲଗା, କିଛି ଗୋଟାଏ ନୂଆ, ଏଇ ଭାବ କଣ ଆକ୍ରମଣ କରୁ ନାହିଁ ଆଜିର ଯୁବକ ମାନଙ୍କୁ ?

ଯାହା କାଲି ଥିଲା, ତା' ଆଜି ମଧ୍ୟ ରହିଛି—ଆସନ୍ତାକାଲି ବି ରହିବ ।

ତାହାହେଲେ କାଲି ଯାହା ହୋଇପାରିନ, ତା' ପାଇଁ ଦୁଃଖ କାହିଁକି ?

ଶଶୀବାବୁଙ୍କର ଆଖିରେ ଲାଗିଲା ଯୁଗ ଯୁଗାନ୍ତରର ଶୋଭାଯାତ୍ରା— ପଟୁଆର—ଗୋଟାଏ ଅବିଚ୍ଛିନ୍ନ ସୂତ୍ର ମଣିଷକୁ ନେଇ । ଯିଏ ଚାଲିଯାଇଛି, ତା'ର ସବୁ କିଛି ସରି ଯାଇ ନାହିଁ । ସେ ତା'ର ହସ ଦେଇ ଦେଇଛି ତାର ପଛରେ ଆସୁଥିବା ଲୋକକୁ । ତାର ହାତରେ ଧରାଇ ଦେଇଛି ଦୀପ । ଏମିତି ଚାଲିଛି ସୃଷ୍ଟିର କ୍ରମଣଃ ।

ତେବେ ହଜିଯାଇଛି କିଏ ? ସରିଯାଇଛି କଣ ? ବ୍ୟକ୍ତି, ନା ତା'ର ସ୍ୱପ୍ନ, ତା'ର ଆକାଂକ୍ଷା ?

ନା—ନା—ଜୀବନ ଶ୍ରେଷ୍ଠ ନୁହେଁ । ଜୀବନ ଗୋଟିଏ ଅସରନ୍ତି ମାଳା । ଆଜିକାର ମଣିଷ ଚାଲିଯାଉଛି । କିନ୍ତୁ ମାଳା ସରୁ ନାହିଁ । ସେଇ ରଙ୍ଗ, ସେଇ ବଇଭବ ନେଇ ନୂଆ ନୂଆ ମୁକ୍ତା ଦେଖା ଦେଉଛି, ନୂଆ ନୂଆ ମଣିଷ । କିନ୍ତୁ ବାହାରର ରୂପ ଅଲଗା । ଆଜିକାର ମାପକାଠିରେ ଲୋକେ କହୁଛନ୍ତି—ଏଇଟା ନୂଆ, ଏଇଟା ପୁରୁଣା ।

ଫଟୋରେ ସେ ଯେଉଁ ଅଧା ହସଟା ଅଛି—ଶଶୀବାବୁ ନିରେଖି ଦେଖିଲେ । ଜୟନ୍ତ କେବେ କେବେ ଏମିତି ହସେ ସତ ! ସ୍ୱାଧୀନତାର ନାଜପୂତା ଦୁଇଟି ଅଳ୍ପ ଫାଙ୍କହୁଏ ଠିକ୍ ଏମିତିକା ।

କଳା କଳା ଘଞ୍ଚ ଭୃଲ୍ଲ ଆଖିକୁ ଘୋଡ଼େଇ ଦେଇଛି—ଜୟନ୍ତର ଯେମିତି । ଜୟନ୍ତର ଆଖି ଦୁଇଟା ଯାହା ଖାଲି ତା ମା'ଆ ପରି । ମୁହଁର ଗଢ଼ଣ ବି ଟିକିଏ ଅଲଗା ।

କିନ୍ତୁ ଏଇ ଅବାଧ୍ୟ, ଅଶାନ୍ତ ଜୟନ୍ତଠି କଣ ନାହିଁ ତାଙ୍କ ଜୀବନର କିଛି ? ତା'ର ସବୁ ପ୍ରତାରଣା, ଭଣ୍ଡାମି ଭିତରେ କ'ଣ ନାହିଁ ତାଙ୍କ ନିଜର ଦୁର୍ଦ୍ଦମ ଆଶା ଅଭିଳାଷର ଇଙ୍ଗିତ ?

ଶଶୀବାବୁ ଭାବିଲେ । ଜୟନ୍ତ ହୁଏତ ତା' ନିଜ ଜୀବନରେ ଅଦାମି, ଅବହେଳିତ ହିନ ହୋଇ ରହିଯିବ । କିନ୍ତୁ ତା' ପୁଅ ? କିମ୍ବା ତା' ପୁଅ ? ?

ଜୟନ୍ତ କିଏ ? ଖାଲି ସେଇ ନିରବଚ୍ଛିନ୍ନମାଳାର ଗୋଟିଏ ମୁକ୍ତା ତ—ଆଉ କଣ ? କିନ୍ତୁ ମୁକ୍ତାରେ ଫରକ୍ ଥାଏ । ମଣିଷ ମଣିଷ ଭିତରେ ପ୍ରଭେଦ ଥାଏ । ସେଇ ସ୍ୱାତନ୍ତ୍ର୍ୟର ଗୌରବ ନେଇ ଉଡ଼ନ୍ତି—ଏ ମୋ ଦେଶ,—ମୋ ଜାତି, ମୋ ବଂଶ ।

ମୋ' ବଂଶ—ମୋର ବଂଶ ।

ଶଶୀବାବୁ ଅମକ ଠିଆ ହେଲେ । ଯେଉଁ ଅସାଧାରଣ ପ୍ରତିଭାଟି ବିକଶିତ ହୋଇ ପାରିଥାନ୍ତା ତାଙ୍କ ଜୀବନରେ—ତା'ର ମୂଲ୍ୟ ଦେବ ଭବିଷ୍ୟତ । କିନ୍ତୁ ତାହା ଅସୁମାର ଜନଗହଳର ଭବିଷ୍ୟତ ନୁହେଁ—ସେ ତାଙ୍କର ବଂଶର ଭବିଷ୍ୟତ ।

ଜୟନ୍ତ—ତାଙ୍କର ପୁଅ । ଜୟନ୍ତର ପୁଅ । ତା' ପରେ—ତା' ପରେ ଏମିତି । ନ ହେଲେ ସତ, ରଜତ, ତାଙ୍କର ବଂଶ । ସେମାନେ ଯାହା କିଛି ହୁଅନ୍ତୁ ପଛେ ତାଙ୍କଠି ଅଛି ନିଜର ବିଶିଷ୍ଟ ସତ୍ତା । ସେ ବିଶ୍ୱସ୍ତ ଫୁଟିବ—ଭେବେହେଲେ ।

ଶଶୀବାବୁ ଫେରି ଆସିଲେ ଟେବୁଲ ପାଖକୁ । ଗ୍ଲାଡ଼ ଭିତରୁ ଦୀର୍ଘ ନିଶ୍ୱାସ ବାହାରି ଆସିଲା, ଆଶ୍ୱସ୍ତିର । ସୁଦୂର ଭବିଷ୍ୟତ ଆଖି ଠାରୁଛି ହସି ହସି ।

ଫଟୋଟିକୁ ହାତରେ ଧରିଲେ ।

...ହଠାତ୍ ପଛରୁ ନାରୀ କଣ୍ଠ ଶୁଣା ହେଲା । ଶଶିବାବୁ ପଛକୁ ଫେରି ଚାହିଁଲେ । ଜୟନ୍ତର ମା'ଆ । ତାଙ୍କର ଆବିର୍ଭାବ ନିଜେ ଭାବନାରେ କପରି ଗୋଟାଏ ବୈଷମ୍ୟ ସୃଷ୍ଟି କଲା । ସ୍ତ୍ରୀ ଜାତି ସେମାନେ ଏଇ ବଂଶର ଗୌରବ ବୁଝନ୍ତି ନାହିଁ, ବୁଝିପାରିବେ ନାହିଁ । ସେମାନେ ଖାଲି ବଂଶ ଗଢ଼ିବାରେ ସାହାଯ୍ୟ

କରନ୍ତୁ ଉପକରଣ ମାତ୍ର । ବଂଶ—ପୁରୁଷର ସୃଷ୍ଟିର ପରମ୍ପରା । ପୌରୁଷର ଗର୍ବରେ ଶଶୀବାବୁ ନିଶ୍ୱାସ ମାରିଲେ ।

ଜସ୍ମି ବୋଉ ଅତମତ ହୋଇ କଣ ପଚାରିବେ ବୋଲି ହେଲେ । ଶଙ୍କାକୁଳ ଭାବଟିଏ । ଲୁହ ପୋଛୁ ପୋଛୁ ଆଖିର ଉଜ୍ଜ୍ୱଳତା ଲିଭି ଯାଇଛୁ ଯେମିତ । କଣ୍ଠରେ ଆଶଙ୍କା ଓ ଉଦ୍‌ବେଗ ନେଇ କହିଲେ— ହଁ କ'ଣ କହୁଥିଲି କି, ଇସ୍ତେ ଜସ୍ମିକୁ ଚଠି ଦେଇଥିଲି ତା' ବାହାଘର ବିଷୟରେ ।'

ଜସ୍ମି ବୋଉଙ୍କ ପାଟିରୁ କଥା ନ ସରୁଣୁ ଶଶୀବାବୁ କହି ଉଠିଲେ—ହଁ, ହଁ, ମୁଁ ପଢ଼ିଛି । ତା' ଇଚ୍ଛା ଅନୁସାରେ ତ ହେବ—ସେଥିରେ ଆପତ୍ତିର କଥା କଣ ଅଛି ?

ଜସ୍ମି ବୋଉ ନିରେଖି ଚାହିଁଲେ ସ୍ୱାମୀଙ୍କୁ । ଏ କ'ଣ ପ୍ରକୃତ ସମ୍ମତ ନା ବିରକ୍ତି—ଅବହେଳା ? କାହିଁ । ତାଙ୍କ ମୁହଁରେ ବିରକ୍ତିର ଚିହ୍ନ ତ ଫୁଟି ଉଠୁନାହିଁ ।

× × × ×

ଦୁଇବର୍ଷ ପରେ ।

ସେଇ ଘରେ । ଶଶୀବାବୁ କେତେଦିନ ହେଲା ଶଯ୍ୟାଗତ । କିନ୍ତୁ ଆଜ ତାଙ୍କ ମୁହଁରେ ଖୁସି ଉକୁଟି ଉଠୁଛି । ଝରକାଟା ଖୋଲି ଦେବାକୁ କହି ସେ ଅନେଇଲେ ବାହାରକୁ । ଚାକରକୁ ପଚାରିଲେ 'ମାଆ କାହାନ୍ତି ? ଟିକିଏ ଡାକଦେଲୁ ଏଠିକି ।

ଜସ୍ମି ବୋଉ ଆସିଲେ ।

ବ୍ୟଗ୍ର ହୋଇ ଶଶୀବାବୁ ପଚାରିଲେ—'ହଁ—ଜଣ କରୁଥିଲେ କି ? ତା' ପରେ ତାଙ୍କ ମୁହଁକୁ ଅନାଇ —ଏଁ—ଏମିତ ହାଣ୍ଡି ଭଳିଆ ମୁହଁଟାକୁ କାହିଁକି କରିଛ ? ଆଜ ପରା ଜସ୍ମି ପୁଅର ଏକୋଇଶା—

ଜସ୍ମି ବୋଉ ମଳିନ ହସଟିଏ ହସିଦେଇ କହିଲେ—ହଁ-ମ ଏକୋଇଶା ହେଉଛି, ତମ ଦେହ ତ ଏମିତ—'

ଶଶୀବାବୁ ବିରକ୍ତ ହେଲାପରି କହିଲେ—'ଓ-ହୋ ଏଇ ମାଇପିକଥା ଗଲାନାହିଁ । ମୋ ଦେହ କଣ ଆଉ ଖରାପ ହୁଅନ୍ତା ନାହିଁ, ନା ମୁଁ ସବୁଦିନେ ବଞ୍ଚି ରହିଥିବି । ଷାଠିଏ ଆସି ପୂରିବାକୁ କେଇଟାଦିନ । ତା ପରେ କାମଦାମ ସାରି ଘରକୁ ଫେରିବା କଥା । ଯାଉ...ଦରକାରିମାନ ଅନ୍ୟ କଥା ଥାଉ । ହଁ—ମୁଁ କଣ କହୁଥିଲି କି— ପୁଅ ନାଁ କଣ ଦିଆହେଉଛି ?

କେଜାଣି ପିଲାମାନେ କ'ଣ ପୁଦରିଆ ନାଁ ସବୁ ବାଛୁଛନ୍ତି । ସ୍ୱପନକୁମାର, ଦେବଦତ୍ତ, ଚନ୍ଦନଶୁଭ୍ର—ଏମିତ ସବୁ କଣ ।'

ମୁଣ୍ଡଟାକୁ ଝିଙ୍କି ନେଇ ଉଠିପଡ଼ିଲେ ଶଶୀବାବୁ । ସତେ ଯେମିତ କ'ଣ କଛୁ ଘର୍ଷି ଦଲ ଦେବେ । କହିଲେ—ଧ୍ୟାତ୍; କଏ ଏ ସବୁ ନାଁ' ଦେଇ ? ଯେତେକ ସବୁ ବଜାଗପ୍ସ ନା — ନା ଅଛୁ ଲାଲଜ୍ୟ ନା ଆର୍ଥମାଧୁସ୍ସ ।'

ଏମିତକା କଥାରେ ସ୍ୱାମୀ ଗମ୍ଭୀର ଚନ୍ତା କର ଅନ୍ୟମାନଙ୍କୁ ବାଛୁବେ, ଏହା ଜସ୍ତି ବୋଉ ଖବ ନ ଥିଲେ ମୋଟେ । ସେ ମନେ ମନେ ଖୁସି ହେଲେ ଯେ, ଶଶୀବାବୁଙ୍କର ଫସାର ପ୍ରତ ଅସନ୍ତ କମି ନାହିଁ ବଶେଷ ବାଙ୍ଗ୍ଳା ଓ ସେଗ ସଙ୍କେ । ସେ କୁରୁହଳୀ ହୋଇ କହିଲେ ପିଲ ଖେଳାଇଲ ଭଙ୍ଗୀରେ—'ବେଶ — ତମେ ତା' ହେଲେ ଗୋଟାଏ ଭଲ ନାଁ ବାଛୁ ଦେଉନାହିଁ ?

ଶଶୀବାବୁ ଗମ୍ଭୀର ହୋଇ କହିଲେ—ନାଁ । ନା, ମୁଁ କଣ ବାଛୁବ ? ସେଇ ପିଲମାନେହିଁ ବାଛନ୍ତୁ । କନ୍ତୁ ମୋର ଗୋଟିଏ କହିବାର କଥା—ଯେଉଁ ନାଁ ଦିଆହେଉ ପଛେ, ସେଥିରେ 'ଶେଖର' ନଶ୍ଚୟ ଥିବ ।

ସାନ ପୁଅ ସତ୍ୟ ଓ ତା ଭଉଣୀ ଅରୁଣା ଘର ଭିତରକୁ ଆସି ଯାଇଥିଲେ । ସତ୍ୟ ବଡ଼୍ର ପଭରୁ କଣ୍ଠରେ କହିଲ—'ମାନେ କ'ଣ ସ୍ୱପ୍ନଶେଖର ଦେବଶେଖର ଏମିତ—'

ସେ ସବୁ ତୁମେ ଜାଣ । ମୋର ଖାଲି ଏତକ କହିବାର କଥା ଯେ, ସେ ନାଁରେ 'ଶେଖର' ନଶ୍ଚୟ ରହିବ । ଚନ୍ଦ୍ରଶେଖର—ଶଶୀଶେଖର—ଜସ୍ୱନ୍ତଶେଖର—'

ଅରୁଣା ଆହତ ଭଙ୍ଗୀରେ ହାତ ଦୁଇଟାକୁ ହଲାଇ କହିଲ--'ନାଇଁ ବାପା' —ତାହା ହେଲେ ତା'ର କଛୁ ମାନେ ରହିବ ନାହିଁ । ଏଇ ଭାଇଙ୍କ ନାଁ ଜସ୍ୱନ୍ତଶେଖର ଦିଆହୋଇଛୁ । କ'ଣ ତାର ମାନେ ଅଛୁ ଭଲ !

ଶଶୀବାବୁ ହସିଲେ ଅବହେଳାର ହସ । ଏ ପିଲମାନେ କଣ ବୁଝିବେ ବଂଶର ଗୌରବ । ତାଙ୍କ ଆଖି ଆଗରେ ଦଣୁଥିଲ—ଏଇ 'ଶେଖର ପଦଟିକୁ ନେଇ ଲମ୍ବି ଯାଇଛୁ ତାଙ୍କର ବଂଶଧାର୍ ।

ଏଇ ସାଧାରଣ କନଷର ଗ୍ରୁପରେ ଅସାଧାରଣ ଘଣଚସ୍ତ ଭବଷ୍ୟତ ପାଇଁ ନର୍ଦ୍ଦିଷ୍ଟ ହୋଇ ରହିଛୁ । ଏଥିରେ ହାସ୍ୟାସ୍ପଦ କ'ଣ ଅଛୁ ?

···କନ୍ତୁ ଅରୁର ମନ ଫିକା ହୋଇ ଯାଇଥିଲ ଯେ ବାପାଙ୍କ ଯୋଗୁ ପୁଅ ପାଇଁ ରବନ୍ଦ୍ରନାଥ, ମାନସିଂହଙ୍କର କବତା ବହିରୁ ବଗ୍ଗ ହୋଇଥିବା ଭଲ ଭଲ ନା ଦେଇ ହେଲନାହିଁ ।

ଆଉ ଜସ୍ତି ବୋଉ ଜାବାହୋଇ ବ୍ସିହିଁ ରହିଥିଲେ ସ୍ୱାମୀଙ୍କ ଆଡ଼େ ଓ ଓ ଘାବୁଥିଲେ ବୁଢ଼ାହେଲେ ମିଣିପେ ସବୁ ଏମିତ ଅବାଗିଆ ହୁଅନ୍ତ କାହିଁକ ?

●

# ବର-କନଧା

● ଅଚ୍ୟୁତାନନ୍ଦ ପଣ୍ଡା

ପଦ୍ମନାଭ ପାଟି କରି ଉଠିଲା—"ଏ ଶଳା ମାଙ୍କଡ଼ ପଲ କଂସାସୁର ଭଳି ରାଜ୍ୟକୁ ନାଶ କରିବେ ଦେଖାଗଲାଣି । କେଉଁ ବଡ଼ ଡାଳଟା ଶଳା ଭାଙ୍ଗି ଗଲେଇ ପକେଇଛନ୍ତି ।" ବଡ଼ ବର ଡାଳ ଖଣ୍ଡେ ତଳେ ପଡ଼ିଚି । ମୂଳ ପାଖରୁ କିଛି ଅଂଶ ଛେଲି ହୋଇ ଯାଇଛି । ଛେଲି ହୋଇ ଯାଇଥିବା ଜାଗାରେ ସ୍ତର ଅନ୍ତରୁ ବୁନ୍ଦେ ବୁନ୍ଦେ ଧଳା ଧଳା କ୍ଷୀର ଝରଝର ଝରଝ ବେଶି ହୋଇଗଲେ ବଡ଼ ଟୋପା ହୋଇ ତଳକୁ ଥୋପି ପଡ଼ୁଛି । ପଦ୍ମନାଭ ବାଁ ହାତ ମଝି ଆଙ୍ଗୁଳରେ ଡାଳରୁ କ୍ଷୀର ପୋଛି ମାଟିରେ ଅଙ୍ଗୁଳି ଘଷି ଘଷି ମାଙ୍କଡ଼ କଥା ଭାବି ରାଗରେ ଓଠ କାମୁଡ଼ିଲା । କେଉଁଠୁ ଡାଳଟା ଭାଙ୍ଗିଛି ଜାଣିବ ବୋଲି ଉପରକୁ ଅନାଇଲା । ଜାଣିପାରିଲାନି ଖୁବ୍ ବଡ଼ ନ ହେଲେ ବି ଗ୍ରେଟ ନୁହେଁ । ପଥ ଖେଦ ହୋଇ ଯାଇଛି । ବରଗଛଟି ଆସ୍ତେ ଆସ୍ତେ ଚକଡା ମାଡ଼ି ବଢ଼ି ବଢ଼ି ଯାଉଛି । ଓସ୍ତ ଗଛଟି ଡେଙ୍ଗାରେ ଖାଲି ବଢ଼ୁଛି । ବରଗଛର ଓହଳ ଭିତରେ ଓସ୍ତ ଗଛଟି ଛନ୍ଦି ହୋଇ ରହିଛି । ବରଗଛ ଅଣ୍ଟିକୁ ଜୋରରେ ଜାବୁଡ଼ି ଧରିଛି । ଦୁଇଟି ଗଛ ଗୋଟିଏ ଗଛର ଦୁଇଟି ଶାଖା ପରି ଆଗ ପଛ ହୋଇ ବଢ଼ୁଛନ୍ତି । ଗଛ ମୂଳରେ ପଦ୍ମନାଭ ମାଟିର ଗ୍ରେନିଆ ବେଦୀଟିଏ କରି ଗୋବରରେ ଲିପି ଦେଇଛି । କାମ ଦାମ ସାରି ଯେତେବେଳେ ପାରେ ସେତେବେଳେ ଆସି ସେଠି ଘଡ଼ିଏ ବସିଯାଏ । ଗାମୁଛା ପକାଇ ପଦ୍ମନାଭ ବେଦୀ ଉପରେ ଟିକିଏ ଗଡ଼େଇ ଗଡ଼େଇ ହେଲା । ଗଛର ପେନ୍ଥା ପେନ୍ଥା ଫଳ ଲଦି ହୋଇଛି । ପ୍ରତି ଗ୍ରେଟ ଗ୍ରେଟ ଡାଳର ଆଗରେ ପତରର ଅଗରେ ଓ ପଛରେ ନାଲି ନାଲି ଫଳ ଚକ୍ ଚକ୍ କରୁଛି । ଗ୍ରେଟ ଗ୍ରେଟ ଚଢ଼େଇ ଏ ପେନ୍ଥାରୁ ସେ ପେନ୍ଥାକୁ ଡେଇଁ ଡେଇଁ ପାଚିଲା ଫଳ ଦେଖି ଥଣ୍ଟ ପୁରାଇ ଫଟାଇ ଗିଳୁଛନ୍ତି । ଫଳରେ ନାଲି ଚୋପା ଫାଟି ମେଞ୍ଚା ମେଞ୍ଚା ହଳଦିଆ ଗର୍ଭ ଥଣ୍ଟରୁ ତଳକୁ ଛିଟିକି ଆସୁଛି । କେତେବେଳେ କେମିତି ଡାମରା କାଉ ଦଳ ଫଳ ଖସିଲାବେଳେ ଲେଞ୍ଜଣୀ ଭଙ୍ଗ ତଳେ ପଡ଼ିବା ଆଗରୁ ବୋକି ନେଉଛନ୍ତି । ଓସ୍ତ ଗଛର ଉପରେ ଡାଳଟା ଯେଉଁଠି ଦୁଇଫେଣା ହୋଇ ଯାଇଛି । ତାରି ମଝିରେ କୁଟା ଆଉ କାଠିରେ ଗୋବରା ଚଢ଼େଇ ଗ୍ରେଟ ବସାଟିଏ କରିଛି । ପଦ୍ମନାଭ ଏଇମିତି ଏଇ ଗଛତଳେ ଶୋଇ ଶୋଇ ଦେଖିଛି ପ୍ରଥମେ ସେଦିନ ମାଈ ଚଢ଼େଇଟା ଖଣ୍ଡେ କାଠି ଥଣ୍ଟରେ ଧରି ଆସି ସେଠି ବସିଲା । ବସା ପୂରା ହୋଇଗଲା ପରେ ଦିହିଁ ଚଢ଼େଇ ବରାବର ସେଠି ଲୁଚିବାକୁ ହେଉଥାନ୍ତି । ତା ପରେ ଦିନେ ଅଣ୍ଡା ଖୋଳ କେତେଟା ବେଦୀ ଉପରେ ଆସି ପଡ଼ିଲା । ପଦ୍ମନାଭ ସେଦିନ ଚାହିଁକି ଆପଣା ଗ୍ରୀବ ହସି ପକାଇଲା । ସେ ଗଛ

ଲଗାଇଥିଲା । ତାର ଗଛ ଉପରେ ଅଣ୍ଡାନେଇ ଗୋବରା ଚୁଆ କରିଛି । ଚୁଆ ତ'ଟା ବଡ଼ ହୋଇଗଲେଣି । ଖଣ୍ଡି ଉଡ଼ା ଦେଉଛନ୍ତି । ମାଆକୁ ଡାଳ ଡାଳରେ ଦେଖି ଅଣ୍ଟା ଖୋଲି ଚେଁ ଚୁଁ ହୋଇ ଉଠିଲେ ପରା ସକାଳୁ ଉଠି ପଦ୍ମନାଭ ବରଗଛର ଗଣ୍ଡିରେ ହାଣ୍ଡିଟେ ବାନ୍ଧି ଦେଇଥିଲା । ହାଣ୍ଡିର ପଛରେ କଣାକରି କୁଟା ଖଣ୍ଡେ ଖୋସି ଦେଇଥିଲା । ହାଣ୍ଡିରେ ପ୍ରତିଦିନ ଗାଧୋଇ ସାରି ଆସି ପଦ୍ମନାଭ ପାଣି ଢାଳେ । କୁଟା ଦେଇ ଟୋପା ଟୋପା ପାଣି ଗଛର ଗଣ୍ଡି ଦେଇ ମୂଳକୁ ଗଡ଼ିଆସେ । ଏତେ ବଡ଼ ଗଛ ଦୁଇଟା । ଚେର ଯାଇଁ ପାତାଳରେ ଫୁଟିବଣି । ତେବେ ବି ପଦ୍ମନାଭ ବୁନ୍ଦା ବୁନ୍ଦା ପାଣି ଗଛମୂଳରେ ପଡ଼ିବାର ଦେଖି ଖୁସି ହୁଏ । ହାଣ୍ଡିଟା ଭିତରେ ଗୁଣ୍ଡିଚ ମୂଷାଟେ ମୁହଁ ଗଳେଇ ଖଡ଼ ଖଡ଼ କଲା । ଠିକ୍ ଉପରେ ଡାଳରୁ ଡାମରା କାଉଟା ଉଡ଼ି ଆସି ହାଣ୍ଡି ଦେହରେ ବସି ହୋଇ ଉଡ଼ିଗଲା । ଗୁଣ୍ଡୁଚ ମୂଷାଟା ବାହାରି ନପାରି ଲାଙ୍ଗୁଡ଼କୁ ଫୁଲେଇ ଦେଲା । ଲୁମଗୁଡ଼ାକ ଠିଆ ହୋଇଗଲା । ହାଣ୍ଡି ଭିତରୁ ଚିଁ ଚିଁ ହେଇ ଉଠିଲା । ତାର ସାଙ୍ଗରେ ତାଳ ପକାଇ ଗଛରେ ଯେତେ ଚଢ଼େଇ ସମସ୍ତେ ପାଟି କରିଉଠିଲେ । ଗଛର ପତର ସନ୍ଧିରୁ ଚାରିଆଡ଼େ ପକ୍ଷୀର ଦୋବାଲି ଉଚ୍ଛୁଳି ପଡ଼ିଲା । ଗଛର ଏ ଡାଳରୁ ସେ ଡାଳକୁ ଆଉ ଯେତେ ଗୁଣ୍ଡୁଚ ମୂଷା ଧାଁ ଧଉଡ଼ା ଲଗାଇଲେ ମୁଠା ମୁଠା ପାଚିଲା ଫଳମୂଳ ପିଣ୍ଡି ଉପରେ କୁଢ଼େଇ ହେଇ ଯାଉଥାଏ ପଦ୍ମନାଭର ଓଠ କଡ଼ରୁ ହସ ପିଟକ ପଡ଼ିଲା । କେତେ ବଡ଼ଟେ ଗଛ ଆଣି ସେ ଲଗାଇ ଥିଲା, କେତେଟା ବର୍ଷ ଭିତରେ କେତେ ବଡ଼ ସତେ ହୋଇଗଲା ସ । ଆଏଁ—ସେ ଜିଭ କାମୁଡ଼ିଲା । ନିଜେ ଖୁଣି ପକାଉଛି । ସେ ଉଠିଯାଇଁ ପାଖ ଗଡ଼ିଆରୁ ଲୋଟାରେ ପାଣି ଆଣି ହାଣ୍ଡିରେ ଢାଳିଲା । କୁଟା ଦେଇ ପାଣି ଟପ୍ ଟପ୍ କରି ଝରି ପଡ଼ିଲା । ବିଲ ପାଖକୁ ମୋଟା ଡାଳଟେ ଉପରୁ ବାଙ୍କି ଆସି ମାଟିରୁ ଟିକିଏ ଛାଡ଼ି ପୁଣି ବାଙ୍କି ଉପରକୁ ଉଠିଯାଇଛି । ଗାଈଆଳ ଟୋକାଟା ବାଙ୍କରେ ବସି ଡାଳଟାକୁ ଉଠାଉଛି ଓ ପକାଉଛି । ଦୋଳି ଖେଳୁଛି ଏଣେ ଗୀତିଣୀ ଗାଉଛି "ସର୍ଗେ ଡାଳ, ମର୍ତ୍ତେ ଡାଳ" । ଗ୍ରେଟ ମୁଣ୍ଡ-ବୁଡ଼ିଆ ବାଛୁରିଟା ଡାଳର ଅଗ ପତର ଖାଇବା ପାଇଁ ମୁହଁ ବଢ଼ାଉଛି । ଡାଳ ତା ମୁହଁରେ ବାଜୁଛି ପୁଣି ଉଠିଯାଉଛି । ଗାଈଆଳ ଟୋକାଟା ଜୋରରେ ଦୋଳି ଖେଳି ଖେଳି ଖୁବ ବେଶୀ ବେଶୀ ଟେକି ଦେଉଛି । ପଦ୍ମନାଭ ହସି ହସି ଆଖି ଫେରାଇଲା । ବରଗଛରୁ କେତେଟା ଓହଳ ନୂଆ ହେଇ ଲମ୍ବି ଆସିଛି । ଓହଳର ଅଗରେ କଞ୍ଚା ଧୂନା ରଙ୍ଗର ସରୁ ସରୁ ଚେର ସବୁ ଚାରିଆଡ଼େ ଲମ୍ବି ଯାଇଛି । ଗ୍ରେଟ ଘରଚଟିଆ ଦୁଇଟା ଗୋଡ଼ାଗୋଡ଼ି ଲଗିଛନ୍ତି । ଗୋଟାଏ ଓହଳରୁ ଆର ଓହଳକୁ ଅଗପଛ ହେଇ ଝାମ୍ପ ମାରୁଛନ୍ତି । ଆଃ କି ଲୀଳାଖେଳା ଲାଗିଛି । ଶେଷରେ ପଦ୍ମନାଭର ମନ ଖୁସି ହୋଇଉଠିଲା ।

ବେଞ୍ଚ ଉପରୁ ଗୋଟା ଗୋଟା ପଢ଼ ଚ୍ଛେଚ ହୋଇ ଯାଇଥିବା ଫଳ ସବୁ ଖୋଟାଇ ସେ ଗୋଟେ ଜାଗାରେ କୁଢ଼ାଇଲା । ପାଚିଲା ଫଳଟେ ନେଇ ସେ ପାଟିରେ ପୂରାଇଲା । ଦାନ୍ତରେ ଚୁପେ କାଢ଼ି ପକାଇଲା । ପୁଣି କଣ ସବୁ ପାଟିରେ ଟିକେ ଶସ ପୂରାଇ ଚାଖିଲା । ମନ୍ଦ ନୁହେଁ, ଫଳଗୁଡ଼ାକ ଆଙ୍ଗୁଳା ଆଙ୍ଗୁଳା କରି ଅଣି ଶୋଇ ସ୍ତୁପ ଉପରେ ରଖିଲା । ଆଖି ବୁଜି ସ୍ତୁପ ଉପରେ ଫଳଗୁଡ଼ାକ ଉପରେ ଆସ୍ତେ ଆସ୍ତେ ହାତ ବୁଲାଇଲା । ସ୍ତୁପ ଭିତରେ ତାର ଅଣ୍ଟା ଖିରଖିର ପଡ଼ନ୍ତି ଖେଳ ଯାଉଥାଏ । ସେ ଆଁଖିବୁଜି ଭାବିଲା । ବହୁତ ଦିନ ହେଲାଣି—ହଁ, ପାଖାପାଖି ୩୦ ବର୍ଷ ହେବ । ଏଇଭଳି ଗୋଟାଏ ନର୍ଦ୍ଦମ ଗଛବେଳେ ସେ ହାଟ ସୌଦା କରି ଫେରୁଥାଏ । ଗାଁ ମୁଣ୍ଡରେ ପହଞ୍ଚିଛି ତ କାନ୍ଦକାଟା ପାଟି ଶୁଭିଲା । ମାରଣା ଷଣ୍ଢଟା ଧାଇଁଛି । ଚନ୍ଦ୍ରଶେଖର ବାବୁଙ୍କ ସାନ ପୁଅ ଟୁନୁବାବୁ ରାସ୍ତାରେ ଖେଳୁଛି । ଷଣ୍ଢଟା ଧାଇଁ ଆସିଲା । ଚାରିଆଡ଼ୁ ପାଟି କର୍ମ ଉଠିଲା । ଶେଷକୁ ଚନ୍ଦ୍ରଶେଖରବାବୁ ଦୌଡ଼ି ଆସି ପୁଅକୁ ଟେକିନେଲେ । ଛୁଆକୁ ନେଇ ଚୁମା ଦେଇ ସେ ବ୍ୟସ୍ତ ହୋଇଉଠିଲେ । ଆଖିରୁ ତାଙ୍କର ପାଣି ଗଡ଼ି ଆସିଲା । ଷଣ୍ଢଟା ରାସ୍ତାରେ ଅଟ୍ଟ ବୋଲି ପଦ୍ମନାଭ ପାଖ ବାରଣ୍ଡାକୁ ଉଠି ଯାଇଥାଏ । ରାଗରେ ଷଣ୍ଢଟା ନର୍ଦ୍ଦ-ଯୋଡ଼ରେ ଯାଇ ଶିଙ୍ଘ ପୂରାଇ ମାଟି ଖୋଳିଲା । ଶୂଳା ଶୂଳା ମାଟି ଶିଙ୍ଘରେ ତାଡ଼ି ରାଗରେ ଛୁଟି ଦେଉଥାଏ । ମୁଣ୍ଡାଏ ମାଟି ସାଙ୍ଗରେ ଛୋଟ ବରଗଛଟେ ଛୁଟି ହୋଇ ପଡ଼ିଲା । ଷଣ୍ଢଟା ଦଉଡ଼ି ଆସି ପଡ଼ିର ଢଟା ରାଗରେ ଚାକୁଲେଇ ଦେଇ ଗଛଟାକୁ ମାଡ଼ି ଦଳିଦେଇ ପଳାଇଲା । ପଦ୍ମନାଭ ଫେରିଲା । କୂଅରୁ ପାଣି ଲୋଟେ ଆଣି ଗୋଡ଼ ଧୋଇ ସେ ନିଶ୍ୱାସ ମାରିଲା । କି ଗଛ—କାଲକୁ ନାହିଁ । ଦୁନିଆକୁ ପୋଡ଼ି ପକାଇବ । ଆଃ, ଆଜ କେତେ କାଣ୍ଡଟା ସତେ ଘଟି ନଥାନ୍ତା । ଚନ୍ଦ୍ରଶେଖର ବାବୁଙ୍କ ପୁଅ ପାଖକୁ ଷଣ୍ଢଟା କି ରାଗରେ ସତେ ଧାଇଁ ଆସିଥିଲା । କେତେ ସୁନ୍ଦର ପୁଅଟା କଣ ସତେ ହୋଇଥାନ୍ତା ? ଚନ୍ଦ୍ରଶେଖର ବାବୁଙ୍କ ବଡ଼ପୁଅ କାଳେ ଦପଟି ହୋଇଛି । ସାନକୁ ଚନ୍ଦ୍ରଶେଖରବାବୁ କେତେ ଯତ୍ନରେ ପାଳନ୍ତି । କେତେଥର ସେ ଶୁଣିଛି ଚନ୍ଦ୍ରଶେଖରବାବୁ କହନ୍ତି ସାନପୁଅ ତାଙ୍କର ଖୁବ୍ କଣେ ବଡ଼ ମଣିଷ ହେବ । ବଡ଼ପୁଅ ସ୍କୁଲ ପାସଙ୍କରେ ପଢ଼ୁଛନ୍ତି । ପଦ୍ମନାଭର କେହି ନାହିଁ । ଚବାହ ଆଜ ପର୍ଯ୍ୟନ୍ତ ଯୁଟିଲା ନାହିଁ । ଯୁବକଟି ନାହିଁ ବା । ବାଁ ଗୋଡ଼ଟା କେମିତା, କଳା କଟିକଟି ଦେହ—କିଏ ସତେ ତାକୁ ବାହା ହେବ ? ଗୁଡ଼, ପଦ୍ମନାଭ ବଢ଼ିଲା ଦାଢ଼ି ଭିତରେ ଅଙ୍ଗୁଳି ଗଳାଇ ବୁଣ୍ଡେଇଲା । ଦାଢ଼ି ବାଳଗୁଡ଼ାକ ଟିଣିଟିଣି କରି ଉଠୁଛି । ମୁଣ୍ଡରୁ ବାଳଗୁଡ଼ାକୁ ଜୋରରେ ଟାଣି ଦେଲା । ଦଟା ବାଳ ଛୁଡ଼ି ଆସିଲା । ଏକଦମ୍ ଧଳା, ହଁ, ସେ ଆଜ ଦର୍ପଣରେ ଗାଧୋଇ ସାଣ ଚଡ଼ା

ନାଇଲା ବେଳେ ଦେଖୁଛୁ ମୁଣ୍ଡରେ ଗୋଟିଏ ବୋଲି କଳା ବାଳ ନାହିଁ । ସେ ବୁଢ଼ା ହୋଇଗଲାଣି । ହଁ ଏକବାରକେ ବୁଢ଼ା ହୋଇଗଲାଣି । ହଜାର କଥା । ଏଇଗଛ ଲଗାଇଲା ବେଳେ ତାରତ ଦାଢ଼ା ହେବା ବୟସ ଢେର ଗଡ଼ି ଯାଇଥିଲା । ସେତ କେତେଦିନ ତଳର କଥା । ହଁ ସେଇଦିନ ଖରାବେଳେ ଚନ୍ଦ୍ରଶେଖର ବାବୁଙ୍କ ପୁଅକୁ ଯେଉଁଦିନ ଝଣ୍ଟ ମାରିବାକୁ ଯାଇଥିଲା ସେ ଘରକୁ ଆସି ଗୋଡ଼ ଧୋଇ ଦାନ୍ତରୁ ଝାଳ ମାରୁଛୁ । ତା ମନ କଣ ହୋଇଗଲା । ମୂରୁଖ ଲୋକ । ପାଠଶାଠ ଜାଣେନ । ଚନ୍ଦ୍ରଶେଖରବାବୁ ପୁଅକୁ ଝଣ୍ଟ ଆଗରୁ ଟେକି ନେଇଗଲେ; ତାଙ୍କ ଗେଲ୍ହାପୁଅ । ସେ କାନ୍ଦ ପକାଇଲେ । ପୁଅ ତାଙ୍କର ଖୁବ୍ ବଡ଼ ମଣିଷ ହେବ । ଡେପୁଟିଠୁ ବି ଆହୁରି ବଡ଼ ମଣିଷ । ଗ୍ରେଟ ବରଗଛଟାକୁ ଝଣ୍ଟ ମାଡ଼ି ଚକଟି ଦେଇଗଲା । କି ସୁନ୍ଦର କଅଁଳ ପତର ଦିଟା ତାର ଶ୍ୟାମା ଭଳି ଥୋମଣିରେ ଛିଣ୍ଡେଇ ନେଇଗଲା ସତେ । କେଡ଼େ ବଜଟେ ଗଛ……ହଁ, ସେତ ଠାକୁରାଣୀ ବରଗଛ ଦେଖିଛୁ କେତେ ବଡ଼—ଏକରେ ଜମି ମାଡ଼ି ବସିଛି । ଏ ଗ୍ରେଟ ଗଛଟା ଥିଲେ କଣ ବଡ଼ ହୋଇ ନଥାନ୍ତା ? କେତେ ଜନ୍ତୁ ଆସି ଆଶ୍ରା ନଥାନ୍ତେ । ହଁ ଅ ସେ ଯାଇଁ ପଖାଳ ଗଣ୍ଡେ ଖାଇ ଘରେ ସେଦିନ ଶୋଇଲା । ଖରାଟାରେ ଧାଇଁ ଧାଇଁ ଆସିଛି । ଗ୍ରାଇ ନିଦ ମାଡ଼ି ଆସିଲା । ସେ ସପନ ଦେଖିଲା ସେ ବାହା ହେଉଛି । କେତେ ସୁନ୍ଦର ଗୋରା ତକତକ ବୋହୂଟିଏ । ଘରଦ୍ୱାର ପୁରି ଉଠିଚି…ହଁ, ଝିଅଟିଏ ହୋଇଛି—ଅବିକଳ ମା ଭଳି—କି ସୁନ୍ଦର । ସୂର୍ଯ୍ୟଙ୍କ ବୁଦ୍ଧି ହେବ, ତାକୁ ବୁଦ୍ଧି ହେବନି ।

……ଆରେ ରେ ଝିଅ ଦାଣ୍ଡରେ ଖେଳୁଛି—ମାରଣା ଝଣ୍ଟା ଧାଇଁ ଆସୁଛି । ସେ ଦୌଡ଼ିଗଲା । ଝିଅକୁ ଟେକି ଆଣିଲା । ତା ଆଖିରୁ ଲୁହ ଗଡ଼ି ଆସୁଛି । ସେ ଝିଅଠୁ ଚୁମା ଖାଇବ ବୋଲି ମୁହଁ ପାଖକୁ ଟେକି ଆଣିଲା । ଝିଅ ନୁହେଁ……ବରଗଛ—ସେଇ ଝଣ୍ଟ ଉପୁଡ଼ା ଗ୍ରେଟ ବରଗଛ । ତା ନିଦ ବୁଝିକରି ଭାଙ୍ଗିଗଲା । ସେ ଦେଖିଲା ତା ଆଖିରୁ ସତେ ଲୁହ ବୋହି ଆସୁଛି । ଉଠି ସେ ବୁଲିଗଲା । ବାଡ଼ିକଡ଼ରେ ବରଗଛଟି ପଡ଼ିଛି । ଅଗରେ ଗୋଟିଏ ବୋଲି ପତ୍ର ଅଛି । ସେ ବି ଖରାଧାସରେ ଝାଉଁଳି ଗଲାଣି । ସେ ତାକୁ ନେଇ ଆସିଲା । ବାଡ଼ିରୁ ଫଟା ହାଣ୍ଡିଟେ ଖୋଜି ପାଇଲା ନାହିଁ । ଶେଷକୁ ଯେଉଁ ହାଣ୍ଡିରେ ମୁଗ ପୂରାଇ ରଖିଥିଲା ତଳେ ମୁଗ ଢାଳି ସେ ହାଣ୍ଡିଟା ଆଣିଲା । ମାଟି ଗୁଣ୍ଡକରି ଯତ୍ନକରି ହାଣ୍ଡିରେ ପୂରାଇଲା । ଆରେ ପାଣି ଜମିଯିବ, ତାର ମନେ ନାହିଁତ । ସେ ମାଟି ପୁଣି ହାଣ୍ଡିରୁ କାଢ଼ିଲା । ହାଣ୍ଡି ତଳେ କଣା କରି ପୁଣି ମାଟି ପୂରାଇ ଯତ୍ନରେ ଗଛଟି ଲଗାଇଲା । ଗଛ ମୂଳରେ ପହିଲୁ ଯେଉଁ ମାଟି ଟିକକ ଲାଗିଥିଲା ତାକୁ ସଜାଡ଼ି କରି ଚେର ଦେହରେ ଚାପିଦେଲା । ଜନମ ମାଟି ଖସିଗଲେ ଆଉ କି ଗଛ

ବଞ୍ଚିବ ? ପାଣି ମଗରେ ଆଣି ହାଣ୍ଡିରେ ଦେଲା । ପିଣ୍ଡା ଉପରେ ଛାଇରେ ହାଣ୍ଡିଟି ରଖି ଗଛଟିକୁ ଭଲକରି ଦେଖିଲା । ଯାଉଥିଲା ପୁଣି ଫେରି ଆସିଲା ଗଛ ପାଖରେ ପୁଣି ଦଣ୍ଡେ ବସିଗଲା । ସତେ କଣ ଗଛଟା ବଞ୍ଚିବ ? ସେ ଆଗରୁ ନେଇ ଆସିଲାନ କାହିଁକି ? ଖାଇପାଇଁ ହେଲା ସେ ଦାଣ୍ଡକୁ ଗଲା ।

ପଦ୍ମନାଭ ଗଛମୂଳ ପିଣ୍ଡି ଉପରେ ଶୋଇ ଶୋଇ ଭାବି ଚାଲିଲା । ପ୍ରତିଦିନ ସେ ହାଣ୍ଡିରେ ଗଛ ମୂଳରେ ପାଣି ଢାଳୁଛି । ଗଛଟାକୁ ଧରି ସେଦିନ ତା ଅଙ୍ଗକୁ ବଙ୍କେଇ ଦେଖି ଦେଖି ହଠାତ୍ ଗୁଡ଼ି ହୋଇଗଲା । ଗଛଟା ଜୋରରେ ହଲିଗଲା । ଅଗର ଗୋଟିଏ ଦୋଳି ପତର ଥିଲା । ସେ ବି ପାକଲିଆ ପଡ଼ି ଆସିଥିଲା । ଝଡ଼ ପଡ଼ିଲା ହଠାତ୍ ପବନ ଆସି ପତ୍ରଟାକୁ ଉଡ଼େଇ ନେଇଗଲା । ତା ହାତ ଥରି ଉଠିଲା । ସେ ଜାଣିଶୁଣି ଗଛଟାକୁ ମାରିଦେଲା ବୋଧହୁଏ । ମୂଳଟା ହଲିଗଲା, ଆଉ କଣ ବଞ୍ଚିବ ? ସେ ଉଠିଯାଇ ଅଧଲୋଟେ ପାଣି ଆଣି ପୁଣି ମୂଳରେ ଢାଳିଦେଲା । ତା ମନଟା କାହିଁକି କମିତିକିଆ କମିତିକା ହୋଇଗଲା । ଗଛଟା ରାସ୍ତା କଡରେ ପଡ଼ି ମରିଥିଲେ ମରିଥାନ୍ତା । ସେ କାହିଁକି ଆଣିଲା ? ଆଣି ବଞ୍ଚେଇବ କଣ ନିଜ ହାତରେ ମାରିଦେଲା ତାପରେ ପ୍ରତିଦିନ ସେ ଘରକୁ ଆସିଲାତ ଖଣ୍ଡ: ଶ୍ରେଷ୍ଠ ଗଛଟିକୁ ସେ ପ୍ରଥମେ ଦେଖେ । ଦ୍ୱିତୀୟ ଦିନ ଆଗ ଅଙ୍କୁରଟା କାହିଁକି ଟିକିଏ ମାଟିଆ ଦିଶିଲା । ସେ ଆଙ୍ଗୁଳିରେ ଚପି ଦବାଇଲା । ଯାଃ ବୋଧହୁଏ ଶୁଖି ଆସିଲାଣି । ଆଉ ବଞ୍ଚିବନି । ସେ ଘରୁ ସେଦିନ ଚାଲିଗଲା ! ଗଲାବେଳେ ଠାକୁରାଣୀ ଗଛ ବାଟ ଦେଇଗଲା । କେଡ଼େ ବଡ଼ ଗଛ । ମୁଣ୍ଡଟେକି ଚାହିଁଲେ ମୁଣ୍ଡରୁ ଠେକା ଖସି ପଡ଼ିବ । ସେ ଶ୍ରେଷ୍ଠ ଗଛଟା ଆଣି ଲଗାଇଥିଲା । ସେ କଣ ବଡ଼ ହୋଇ ନ ଥାନ୍ତା ? ଏଇମିତି ଠାକୁରାଣୀ ଗଛଭଳି ଚକଡ଼ା ମାଡ଼ି ବଢ଼ି ଥାନ୍ତା—ଗଛଯାକ ଚଢ଼େଇ ଖୁଦ ହୋଇଥାନ୍ତେ—ପେଣ୍ଡା ପେଣ୍ଡା ଫଳ ସବୁ ଡାଳରେ ଲେସି ହୋଇଯାଇଥାନ୍ତା । ଛୁଡ଼—ନ ହେଲା ନାହିଁ । ସେ ଅଗକୁ ଚାଲିଲା । ଚନ୍ଦ୍ରଶେଖରବାବୁଙ୍କ ପୁଅ ଦପଟିଠୁଁ ବଡ଼ ହେବ—ବାପ ତାର ଷଣ୍ଢ ଅଗରୁ ଟେକି ନେଇଗଲେ । ସେ ଷଣ୍ଢ ଅଗରୁ ଗଛଟାକୁ ଆଣିଲା ଯେ ମାରିଦେଲା । ଛାତି ଭିତରଟା ତାର ଗିଣିଗଣେଇ ଉଠିଲା । ସେ ଆଖି ବୁଜି ନାକ ପୁଡ଼ା ଫୁଲେଇ ମୁଣ୍ଡ ହଲେଇଲା ମୁଣ୍ଡ ଭିତରେ କଣ ଘୁଡ଼େ ଚରିଯାଉଛି । ସେ ଘରକୁ ଫେରିଲା ।

ତାପରେ ଗଛ ଗଜରି ଉଠିଲା । ଗୋଟାକ ପରେ ଗୋଟିଏ ପତର ଡଳୁ ଉପରକୁ ଅସ୍ତେ ଅସ୍ତେ ଫୁଟି ଉଠିଲା । ପ୍ରତି ନୂଆ ପତରକୁ ସେ ହାତରେ ଆଉଁଷି ଦେଖେ କେଡେ ପାଲିସ୍ ଛନ ଛନ ହେଉଥାଏ । ହାତ ମାଇଲେ ପଛ ଅଡ଼କୁ ବାଙ୍କି ଯାଏ । ସେ ଦାଣ୍ଡ କବାଟ କିଳିଦେଇ ଆସେ ନଈଁପଡ଼ି ଗାଲରେ ପତରକୁ ଟେକି ଅସ୍ତେ ଘଷିଦିଏ । କେଡ଼େ ଥଣ୍ଡା । ତାର ବଦଳ ଋତୁ ପାରି ହୋଇଛି,

ଗାଲ ଭିତରେ ସେ ଅଣ୍ଡା ଶିଘ୍ର ଶିଘ୍ର ହୋଇ ଚାଲିଯାଏ । ଦେହ ତାର ଶୀତେଇ ହୁଏ । ସେ ଢଳ ଢଳ ହୋଇ ଏପାଖ ସେପାଖ ଗୁହିଁ ପତର ଉପରେ ଚୂମା ଦେଇ ଚ୍ଛେପ ଲଗେଇ ଦିଏ ।

ସେଦିନ ସୋମ ପୁରୋହିତ ଘରକୁ ଆସିଥିଲେ । ପଦ୍ମନାଭର ବାପଙ୍କ ପିଣ୍ଡ ପକାଇବା ଦିନ ପୁରୋହିତେ ବର୍ଷରେ ଥରେ ଆସନ୍ତି । ବର୍ଷକର ଗୋଟେ ଦିନ ପିତୃ ପୁରୁଷ ଟିକିଏ ପାଣି ପାଆନ୍ତି । ଙ୍ଗଣରେ କେହି ଥିଲେ ବ୍ରାହ୍ମଣ ହାତରେ ଗୁହାଳ ମୁଠେ ଟେକି ଦିଏ । ପିଣ୍ଡ ପକାଇ ସାରି ସେ ପୁରୋହିତଙ୍କୁ ବାରଣ୍ଡାରେ ଖାଇବାକୁ ଦେଲି । ଆଜି ବାପା ତାର ସ୍ୱର୍ଗରେ ଶାନ୍ତିରେ ନିଶ୍ୱାସ ମାରିବେ । ମନ ଭିତରଟା ତାର ଉଦାସ ହୋଇ ଉଠିଲି । ତାର ତ ଫେର ଭାଳ ଆସିବ । ତା ପାଇଁ ତ କେହି ନାହିଁ ଗୁହାଳ ଗଣ୍ଡେ ଟେକି ଦେବ । ପୁରୋହିତ ଖାଇ ଖାଇ ଗଛଟିକୁ ଦେଖି କହିଲେ—"ଆରେ ପଦ୍ମନାଭ ! ବରଗଛଟିତ ବେଶ ବୃଷାଳ ହୋଇଛି । ଖାଲି ବରଗଛଟିଏ କାହିଁକି ରଖିଛୁ । ଅଶ୍ୱତ୍ଥ ବୃକ୍ଷଟିଏ ଆଣି ଲଗା । ବିବାହ କରିଦେବୁ । ଅପୁତ୍ରିକ ଦୋଷ କଟିଯିବରେ ।" ସେଦିନ ସେ ପ୍ରଥମେ ଏ କଥା ଶୁଣିଲି । ମନଟା ତାର ଉଲ୍ଲାସ ହୋଇ ଆସିଲି । ସେ ଯେମିତି ବଡ ଭରସାଟେ ପାଇଲି । ପଚାରିଲି—"ଗୋସେଇଁ ଅପଣେ, ଇମିତି କଣ ହୁଏ ?" ପୁରୋହିତେ ଅଣ୍ଡାରେ ଦକ୍ଷିଣା ଗୁଞ୍ଜି ହଉ୍ ହଉ୍ କହିଲେ—"ରୁ ଆଗେ ଅଶ୍ୱତ୍ଥ ଗଛ ଆଣି ଲଗା । ବୃକ୍ଷ ସ୍ଥାପନା ହୋଇ ଯାଉ—ଆମେ ସବୁ ବ୍ୟବସ୍ଥା କରିଦେବା ।"

ତା ପରେ ସେ ଓସ୍ତଗଛ ପାଇଁ ବହୁତ ଆଡେ ନଜର ପକାଇଛି । ଗାଁ ମୁଣ୍ଡ ପୋଲ ଚ୍ଛୁଆ ଭିତରେ ଓସ୍ତ ଗଛଟେ ଥିଲି ସେ ଖୁବ୍ ଉଚ୍ଚ ହୋଇ ଯାଇଥିଲି । ବରଗଛଠୁଁ ବଡ଼ । ସେଠୁ ସେ ମନମାରି ଫେରି ଆସିଲି । ଥାଉ, ଶେଷକୁ ନ ମିଳିଲାବେଳକୁ ଦେଖିବା । ଯିବା ଆସିବା ବେଳେ ନର୍ଦ୍ଦମାଯୋଡ଼ା ଭିତରେ ନଜର ଦେଇ ଦେଇ ସେ ଯାଇଛି, ଗାଈଆଳ ଟୋକାଙ୍କୁ ଗାଈ ନେଲାବେଳେ, ଶାଗ ତୋଳା ଗଲାବେଳେ ପାଲୁଣୀକୁ କେତେଥର ପଚାରିଛି । ଶେଷକୁ ମହାଦେବ ମନ୍ଦିର ପଛପଟେ ଗାଧୁଆ ପାଣି ରହିବା କୁଣ୍ଡ କଡ଼ରେ ସେ ଛୋଟ ଓସ୍ତଗଛଟିଏ ଦେଖିଲି । ତାଙ୍କୁ ଯତ୍ନରେ ଗୁଣିଆଡ଼୍ ଖୋଳି ତା ମୂଳରେ ମାଟି ପୁଳେ ଲଗାଇ ଘରକୁ ଆଣିଲି । ଆଣିଲାବେଳେ ମନେ ମନେ ଭାବି ଠିକ୍ କରିଛି ଗଛଟା ଠିକ୍ ବରଗଛ ଉଞ୍ଚ ହେବ । ଘରେ ପହଞ୍ଚି ବରଗଛ ସହିତ ଆଗେ ନଛି ନେଲି । ଓସ୍ତ ଟିକିଏ ଉଞ୍ଚ ହେଲି । ହଁ, ମାଟିରେ ପୋତିଦେଲେ ସମାନ ହୋଇଯିବ । ବରଗଛକୁ ଲଗାଇ ଆଉ ଗୋଟିଏ ହାଣ୍ଡିରେ ସେ ଓସ୍ତଗଛକୁ ରଖିଲି । ତାପରେ ଏହି ଦୁଇଟି ଗଛନେଇ ତା ଜୀବନର ଅଧିକାଂଶ ସମୟ କଟାଇ ଆସିଛି, ତାର ଜୁଆପିଲି ନାହିଁ । ଏ

ଦୁଇଟିଙ୍କୁ ବିବାହ କରିଦେଲେ ଅପୁତ୍ରିକ ଦୋଷ କଟିଯିବ । ଗଛ ଦୁଇଟିକୁ ନିଜର ଛୁଆଭଳି ପାଳି ଆସିଛି । ଆପଣାର ଦୁଃଖ, ସୁଖ ତାଙ୍କରି ପାଖରେ ଗୁଣୁ ଗୁଣୁ କହୁଛି, ତାଙ୍କଠୁଁ କିଛି ଉତ୍ତର ପାଉନି ସତ, କିନ୍ତୁ ତାଙ୍କ କଡରେ ନିଜର କଥା କହିଦେଲେ ମନ ତାର ଉଶ୍ୱାସ ହୋଇ ଯାଉଥିଲା । ଗଛ କାଳେ ଶୁଖିଯିବ ସେଥିଲାଗି ବ୍ରାହ୍ମଣ ଘରେ ଖୋସାମତ କରି ଠାକୁର ଗାଧୁଆ ପାଧୁଆ ପାଣି ଆଣି ମୂଳରେ ଢାଳୁଛି । ବାବା ଆଖଣ୍ଡଳମଣିଙ୍କର ଧଣ୍ଡା ଆଣି ଗଛରେ ଗୁଡ଼େଇ ଦେଇଛି । କେତେବେଳେ କେଉଁ କଥା । ସେଦିନ ଆସି ଶରଧାବୋହୂ କଥା କହୁଁ କହୁଁ ଗଛଟାରୁ ପତରଟେ ଛିଣ୍ଡେଇ ପକାଇଲା । ସେ ବୁଝିଲା ଯେ ସେଦିନ ତାର ମାସିଆସ୍ତ ହୋଇଥିଲା । ଆଉ ଶରଧାବୋହୂ ଯାଏ କୁଆଡ଼େ । ଅଛୁଆଁ ମଣିଷ ହୋଇ ଗଛ ଛୁଇଁଦେଲା । ଆଉ କଣ ଗଛ ବଞ୍ଚିବ । ସେ ଶରଧା ବୋହୂକୁ ମାରେ କି ନ ମାରେ । ପୁରୋହିତ ଗୋସାଇଁ ଘରୁ ମନ୍ତ୍ର ପାଣି ଆଣି ଗଛ ଉପରେ ଛିଞ୍ଚିଲା । ମନଟା ତାର କେତେ ଗୁଡ଼୍ ଗୁଡ଼୍ ହେଲା । ସେ କାମରୁ ଫେରି ଆଗେ ଗଛ ପାଖରେ ଦଣ୍ଡେ ବସିଯାଏ । ପବନରେ ଦୋହଲି ଶ୍ଳେଷ ଗଛ ଦୁଇଟା ପିଟିହୋଇ ଯାଆନ୍ତି । ସେ ଚାହିଁ ଚାହିଁ ହସି ପକାଏ । ସେଥିର ପୁନେଇ ବାସିଦିନ ବଡ଼ ଧୂମ ତୋଫାନଟେ ହେଲା ଯେ ବରଗଛଟା ବାଙ୍କିଯାଇଁ ଓସ୍ତଗଛ ଉପରେ ଅଟକି ଯାଇଥାଏ । ସେ ଘରେ ନ ଥିଲା । ଆସି ଦେଖିଲା । ଯାହାହେଉ, ଦୁଇଟାଯାକ ଧରାଧରି ହୋଇ ତୋଫାନର ତୋଡ଼ଟାକୁ ପାର କରି ଦେଲେ । ନ ହେଲେ ବରଗଛଟା ତଳେପଡ଼ି ଭାଙ୍ଗି ଯାଇଥାନ୍ତା । ସେ ବରଗଛକୁ ଠିଆ କରି ପାଖରେ ବାଉଁଶ ପୋତି ସିଧା କରିଦେଲା । ଓସ୍ତଗଛକୁ ଟିକିଏ ଅଉଁସି ଦେଇ ଗାଧିବାକୁ ଗଲା । ଗଛମୂଳରେ ହାଣ୍ଡିରେ ଘାସ ଗଛଟେ ଉଠିଲାତ ସେ ତାକୁ ଓପାଡ଼ି ପକାଏ । ସଞ୍ଜବେଳେ ସେ ଷାଁରୁ ଫେରେ । ଡାଳରେ ଛୁଆଏ ଚକାଭଉଁରି ଖେଳୁଥାନ୍ତି । ପିଣ୍ଡା ଉପରେ ହଣ୍ଡି ଦେଇଁ ଦେଇଁ ମାଆମାନେ ଛୁଆଙ୍କ ଖେଳ ଦେଖି ଅଟକି ଯାଇଥାନ୍ତି । ସେ ଘରେ ଆସି ଦେଖେ ସଞ୍ଜବେଳିଆ ସୁଲୁ ସୁଲୁ ପବନରେ ଗଛ ଦୁଇଟି ଦୋହଲୁଛନ୍ତି, ତା ଛୁଆଙ୍କ ଖେଳ ଭଳି ତାକୁ ଲାଗେ । ସେ ଦଣ୍ଡେ ବସି ଗଛ ଦୁଇଟିକୁ ଅନାଇ ରହେ । ଏକାଦଶୀ ବାସିଠୁଁ ତାକୁ ସେଦିନ ଜର ହେଲା । ବାତ ଜର । ଦିନଦିନ ତାର ଆନଜ୍ଞାନ ରହେନି ଗଛରେ ଲୋଟେ ପାଣି ନ ଦେଲେ ନ ଚଳେ । ତା ଦେହ ମୁଖ ନାହିଁ ବୋଲି ଛୁଆ ଦୁଇଟା ଓପାସ ଶୋଇବେ । ସେ ବସି ବସି ପାଣି ମାଠିଏ କୂଅରୁ କଷ୍ଟରେ କାଢ଼ିଲା । ଦୁଇଗଛ ମୂଳରେ ଢାଳିଦେଇ ଅକାମାରି ବସି ପଡ଼ିଲା । ଗୋଡ଼ ଏଣେ କନ୍ଧ ଫାଟି ପଡ଼ୁଛି । ପାଣି ଗଛମୂଳରେ ଭୁଡ଼ୁ ଭୁଡ଼ୁ ହୋଇ ଭିତରକୁ ଗଳିଗଲା । ସେ ନିଜ ଗୋଡ଼ ଚିପୁ ଚିପୁ ଗଛମୂଳକୁ ଚାହିଁ ବସି ରହିଲା ।

ନାହାକ ପାଖରୁ ସମସ୍ତ ବୁଝି ଆସି ଅକ୍ଷିତ୍ରୃତୀୟା ଦିନ ସେ ଗଛ ଲଗାଇବ ବୋଲି ଠିକ୍ କଲା । ଗଛ ଦୁଇଟା ବଡ଼ ହୋଇଗଲଣି । ଆଉ ହାଣ୍ଡିରେ ଏଣିକି ରଖି ହେବନି । ତେଣୁ ହାଣ୍ଡି ଫଟାଇ ଦେବ । କେଉଁଠି ଗଛ ଲଗାଇବ ବୋଲି ଗାଁରେ ଜଣ ଜଣ କରି ପଚାରିଲା । ସ୍କୁଲ ମୁଣ୍ଡ ପାଖରୁ କଚ୍ଚାବାଟ ଗଲେ ବୋଲ୍ଡକ ରାସ୍ତା କଡ଼ରେ ଗଡ଼ିଆଟିଏ ବି ଅଛି । ପାଖରେ ଗଛବୃକ୍ଷ ନାହିଁ । ହାଟକୁ ରାସ୍ତା—ଭରବାଟ ଜାଗା । ଗଛଟା ସେଇଠି ଲଗେଇଲେ ଅବଶ୍ୟ ପାନ୍ଥଜଣ ତା ମୂଳରେ ଅଶ୍ରା ନେବେ । ସେଇଠି ଗଛ ଲଗାଇବ ବୋଲି ଠିକ୍ କଲା । ୧୫ ଦିନ ଆଗରୁ ବଡ଼ ବଡ଼ ଗାତ ଦୁଇଟା ଖୋଳି କୁଟା ପୁରାଇ ଭିତରଟା ପୋଡ଼ି ଦେଲା । ଅକ୍ଷିତ୍ରୃତୀୟା ଦିନ ଶୁଭବେଳା ଦେଖି ଗଛ ଲଗାଇଲା । ସେଦିନ ସେ ସକାଳୁ ଉପାସ ଥାଏ । ଗଛ ଲଗାଇ ସାରି ଜଣେ ବ୍ରାହ୍ମଣ ଡକାଇ ଖାଇବାକୁ ଦେଲା । ଦକ୍ଷିଣା ଦେଇ ସାରି ବ୍ରାହ୍ମଣ ଗୋଡ଼ରୁ ଟିକିଏ ଧୂଳି ଆଣିଲା । ଧୂଳି ଟିକକ ନେଇ ଗଛ ଉପରେ ଛାଟି ଦେଇ ଆସିଲା । ଏଣିକି ଦିନରେ ଥରେ ହେଉ ଦୁଥର ହେଉ ସେ ସେଠିକି ଯାଏ । ଗଡ଼ିଆରୁ ପାଣି ଆଣି ଗଛ ମୂଳରେ ଢାଳେ । ଅନ୍ୟ ଗାଁରେ କାମ ପଡ଼ିଲେ ବୁଲଣି ରାସ୍ତା ହେଲେ ସୁଦ୍ଧା ସେ ସେଇ ବାଟ ଦେଇଯାଏ । ବାଟଚଲା ଲୋକ ଗଛକୁ ଦେଖି କୁହାକୁହି ହୁଅନ୍ତି—"ଯାହା ହେଉ, ବାଟ ଯାଗାଟିରେ କିଏ ଗଛ ଦୁଇଟି ଲଗାଇଛି । ଭଲ ବାଡ଼ିଆ ଗଛ ଯୋଡ଼ାଏ ଏକା !" ସେ ସେହି ଲୋକଙ୍କ ପଛେ ପଛେ ଚାଲେ । କିଛି କାମ ନଥାଏ । କଣ ଆଉ ଗଛ ବିଷୟରେ କହିବେ କି ? ଗର୍ବରେ ତା ଛାତି ଫୁଲିଉଠେ । ମିଛେରେ ମିଛେରେ ସେମାନଙ୍କ ସାଙ୍ଗରେ କଥାବାର୍ତ୍ତା ଆରମ୍ଭ କରି କଥା ଛଳରେ ତାରି ଗଛ ବୋଲି ସେ କହିପକାଏ । ସେମାନେ ତାଙ୍କୁ ପ୍ରଶଂସା କରନ୍ତି । ଅଣ୍ଟାରୁ କଗଟ କାଢ଼ି ଗୁଣ୍ଡି ଟିପେ ଟିପେ ସେମାନଙ୍କୁ ଦେଇ ସେ ଗଛ ମୂଳକୁ ଫେରିଆସେ ।

ଦିନେ ବଶୁାଲଘର ମାରଣାଷଣ୍ଢଟା ବାଡ଼ଭାଙ୍ଗି ବରଗଛକୁ ଖାଇଗଲା । ସରୁ ସରୁ କେନାଗୁଡ଼ିକୁ ସବୁ ଭାଙ୍ଗି ପକାଇଥାଏ ଗାଈଆଳ ଟୋକାଟେ ଧାଇଁ ଆସି ଖବର ଦେଲା । ସେ ଖାଇ ବସିଥାଏ । ଭାତ ଗୁଣ୍ଡା ତାର ହାତରୁ ଖସି ପଡ଼ିଲା ସେ ଧାଇଁଲା । ଷଣ୍ଢଟାକୁ ସେଦିନ ମାରି ପକାଇ ଥାଆନ୍ତା । ଷଣ୍ଢଟା ତାକୁ ଦେଖି ଧାଇଁଲା । ଠେଙ୍ଗାଟା ଧରି ସେ ଗୋଡ଼ାଇଲା । ତାରବୁଙ୍କି ବୁଦ୍ଧି ହଜି ଯାଇଥାଏ । ସାଆଁଜ଼ ଗଛ ଅଣ୍ଟା ବାଜି ତାର ନଖ ଗୋଟେ ଉଠିଗଲା । ସେ ବସିପଡ଼ିଲା ତାର ହୋସ ପଶିଲା । ସେ ଏଣେ ଧାଇଁଛି କଣ ଗଛର ଅବସ୍ଥା କେଣେ କଣ ହେବଣି । ସେ ଗଛକୁ ଦେଖି ଆଉ ସମ୍ଭାଳି ପାରିଲାନି । ଆଖିରୁ ତାର ଲୁହ ଠପ୍ ଠପ୍ ବୋହି ପଡ଼ିଲା । ଅଖିଆ ଅପିଆ ସେ ସେହିଦିନ ନବୁଜ କରି ବାଡ଼ ବୁଜିଲା । ଗ୍ରେଟିଆ ଦାଟଟିଏ ରଖି ଧଡ଼ାଟିଏ ଲଗାଇଲା । ପ୍ରତିଦିନ ଯାଇଁ ଗଛକୁ ଦେଖେ । ଆଗ୍ରେ

ଆସ୍ତେ ସବୁ ପଞ୍ଚ ଗଛରୁ ଖସି ପଡ଼ିଲା । ସତେ କଣ ଆଉ ଗଛ ତାର ମୁଣ୍ଡ ଟେକିବ ? କେତେବଡ଼ କଳ୍ପନା ସେ କରିଥିଲା । ଠାକୁରାଣୀ ଗଛଠୁଁ ଆହୁରି ତା ଗଛ ବଡ଼ ହେବ । ସେ ବାହାଘର କରିବ । ତାର ପିଲାପିଲି ନାହାନ୍ତି । ଅପୁତ୍ରିକ ଦୋଷ କଟି ଯାଇଥାନ୍ତା ବୋଲି ପୁରୋହିତେ କହୁଥିଲେ ! ଯେଉଁଠି ବସିଲାତ ସେ ଗଛ କଥା କହିଲା । ଦୋକାନ ଦୁଆରେ ସଞ୍ଜବେଳେ ବସି କହୁଁ କହୁଁ ଆଖି ତାର ସରଢ଼ ଆସିଲା, ସେ ଘରକୁ ଉଠି ଆସିଲା । କାଲି ସକାଳୁ ସେ ଷଣ୍ଢକୁ ପାଇଲେ ଆଗେ ତା ଗୋଡ଼ ଚେଷ୍ଟା କରିବ । ରାତିରେ ଶୋଇଲା ବେଳେ ସେଦିନ ନିଦ ତାର ଘଡ଼ି ଘଡ଼ି ଭାଙ୍ଗି ଯାଉଥାଏ । ମାଛ ଅନ୍ଧାରିଆ ବେଳୁ ସେ ଗଛ ପାଖକୁ ଗଲା । ପାଣି ଦି କଳସୀ ଆଣି ମୂଳରେ ଢାଳିଲା ବରଗଛକୁ ହାତରେ ଆଉଁସିବାକୁ ଗଲାବେଳେ କଣ ଉଷୁ ଉଷୁ ମାଲୁମ ହେଲା । ସେ ଅଖି ତରାଟି ଦେଖିଲା । ବହୁତ କୁଆଁ ଉଠିଛି । ସେ ଜିଭ କାମୁଡ଼ି ପକାଇଲା । ଏଇକ୍ଷଣିକ ସେ କୁଆଁକୁ ଭାଙ୍ଗି ଦେଇଥାନ୍ତା ? ସେଦିନ ତା ଆନନ୍ଦ କହିଲେ ନସରେ । ମହାଦେବଙ୍କ ମୁଣ୍ଡ ଉପରେ ଦିଟା ପାଚିଲା କଦଳୀ, ଗୋଟାଏ ତମ୍ବା ପଇସା ଚଢ଼େଇବାକୁ ବ୍ରାହ୍ମଣକୁ ଦେଇ ଆସିଲା ।

ଦିମାସ ଗୁଣ୍ଡି କଲକୁ ସେ ଧାନ ନେଇକରି ଗଲା । ତା ସାଙ୍ଗରେ ଧାନ ଦଳ ସାଉଁଟିଆ ଆସିଲାବେଳେ ଦିଅଣାର ବରା ଗୁଲୁଗୁଲା ତା କୁଆଙ୍କ ପାଇଁ କାନରେ ବାନ୍ଧିଲା । ସାଉଁଟିଆ ସାଙ୍ଗରେ ଅସୁ ଅସୁ ତା ମନ କଣ ହେଇଗଲା । ସେ ପୁଣି ବଜାରକୁ ଫେରିଲା । ବ୍ଲକ ଅଫିସରୁ ଦଶଣାର ସରକାରି ଖତ କିଣି କାନରେ ବାନ୍ଧି ଫେରିଲା କମିତି ଖତ ଦେବ ସେ ଦଶଥର ପଚାରି ଆସିଥିଲା । ଗଛ ମୂଳପାଖ ଖୋଳି ସେ ଖତ ଦେଲା । ଖତ ଦେଇସାରି ସେ ଗଛର ଡାଳ ହାତରେ ଚିପିଲା । ଦୁଇ ହାତରେ ଗଜା ଦୁଇଟାର ଗଣ୍ଡିକୁ ମାପିଲା । ସରକାରି ଖତ ଦେଲେ ଗଛ ଖୁବ୍ ମୋଟା ହେବ । ସେ ଆଖିବୁଜି ଭାବିଲା, ତା ଗଛର ଗଣ୍ଡି କେତେନା କେତେ ମୋଟା ହୋଇଯିବ । ଠାକୁରାଣୀଗଛ ଗଣ୍ଡିଠୁ ବେଶି ମୋଟା । ସେ ହସି ହସି ଗଛକୁ କୁଣ୍ଢାଇ ପକାଇଲା ।

ପଦ୍ମନାଭ ଶୋଇ ଶୋଇ ଅତୀତ କଥା ଭାବି ଯାଉଥିଲା । ଉପରକୁ ଚାହିଁଲା । ଚାରିଆଡ଼େ ବର ଡାଳ···ଓସ୍ତଗଛ ବରଗଛର ଘେରା ଭିତରେ ଠିଆ ହୋଇଛି । ଖଣ୍ଡେ ଦିଖଣ୍ଡ ବରଡାଳର ଓସ୍ତର କେନା ଭିତରେ ପଶି ସେ ପଟକୁ ଲମ୍ବି ଯାଇଛି ଦୁଇଟା ଗଛ ଆଉ ଛନ୍ଦାଛନ୍ଦି ହୋଇ ଉପରକୁ ଉଠୁଛନ୍ତି । ପାଖ ଗାଁରୁ ବାଣଫଟା ଫୁଟିଲା—ବାଜାବାଜି ଉଠିଲା । କାହାର ବାହାଘର ହେଉଛି—ଦିଅଁ ମଙ୍ଗୁଳି ପାଇଁ ବାହାରୁଛନ୍ତି ବୋଧହୁଏ (ପଦ୍ମନାଭର ବାହାଘର କଥା ମନେ ପଡ଼ିଗଲା । ଗଛ ଖୁବ୍ ମାଡ଼ିବର ହୋଇ ବଢ଼ି ଯାଉଥାଏ । ପୁରୋହିତ ଗୋସେଇଁ

ଦିନେ ଆସି କହିଲେ—"ଗଛରେ ଫଳ ହୋଇଗଲେ ବୃଥା ହୋଇଗଲା । ଯଜ୍ଞ ପୂର୍ଣ୍ଣ ନାହିଁ । ତୋ ଗଛ ଯେମିତି ବଢ଼ୁଛନ୍ତି ଶୀଘ୍ର ଫଳିବେନିରେ । ଶୀଘ୍ର ବାହାଘର କରିପକା । ଏଇ ମାସ ଭିତରେ ନ କଲେ ଆଉ ଲଗନ ନାହିଁ ।" ସତକଥା, ତା ମନରେ ଦୟା ଆସିଲା । ନରଣପୁରରେ ଏତିକି ବଡ଼ ଗଛ ଫଳାଇଛନ୍ତି, ସେ ଦେଖି ଆସିଛି । କଣ କରିବ ? ସେ ତ ଆଗରୁ ଜାଣି ନ ଥିଲା । ତା ଜୀବନରେ ଏଇ ଗୋଟିଏ ବୋଲି କାମ । ଭଲ କରି କରିବ । ପାଞ୍ଚ ଜଣ ତା ଦୁଆରେ ପତର ପକେଇବେ । ଘରେ ଯାଇଁ ବାକ୍ସ ଅଣ୍ଡାଳିଲା । ଦିକୋଡ଼ି ଟଙ୍କା ହୁଏ କି ନ ହୁଏ । ଶେଷକୁ ଭାବି ଭାବି ଠିକ୍ କଲା । ଜମି ଦମାଣ ଅଛି କଣ ହେବ ? ଦ'ପା ଜମି ସେ ବନ୍ଧକ ଦେଲା । ତାପରେ ହାତକୁ ଟଙ୍କା ଆଣିଲା ପରେ ସେ ଲାଗି ପଡ଼ିଲା । ପୁରୋହିତ ପାଖରୁ ତାଲିକା ନେଇ ଆସି ଜିନିଷ ଯୋଗାଡ଼ରେ ଲାଗି ପଡ଼ିଲା । ଏକା କାମକୁ ପାରିବନି ବୋଲି କୁହାବୋଲା କରି ପିଉସୀକୁ ଘରକୁ ଆଣିଲା । ଭଉଣୀ ଭିଣେଇ ପାଖକୁ ଖବର ପଠାଇଲା । ଏଇତ ତାର ଗୋଟିଏ ବୋଲି କାମ । ପାଞ୍ଚଜଣଙ୍କୁ ଖୋଜିବନି ଲୋଡ଼ିବନି କେମିତି ? ଗାଁର ପୁରୁଣା ପୁରୁଖା ଲୋକଙ୍କୁ ଡାକି ପାଞ୍ଚକଥା ପଚାରି ବୁଝି ନେଉଥାଏ । ବାହାଘର ଆଗଦିନ ରାତିରୁ ତାର ନିଦ ନ ଥାଏ । ସକାଳୁ ଗାଧୋଇପଡ଼ି ଠାକୁର ଦର୍ଶନ କରିଆସି ଉପାସ ରହିଲା । ବାହାଘର ଆରମ୍ଭ ହୋଇଗଲା । ଭଲ ତେଲିଙ୍ଗୀ ବାଜା ଦେଖି ବରାଦ କରିଥାଏ । ତା ଭଉଣୀ ଏକଥା ଦେଖି କାହିଁକି ଚିଡ଼୍ ଚିଡ଼୍ ହେଉଥାଏ । ଗାଁରେ କଏ କଏ କି ହସୁଥିଲେ । ସେଥିରେ ତାର କଣ ଅଛି । ତା ଘରେ ବାହାଘର ବାଜା ବସିବନି ? ସୋଲରେ ମୁକୁଟ ଭଲ ହେବନି ବୋଲି ଫୁଲରେ ମୁକୁଟ ବରାଦ କରିଥାଏ । ଭଲ ଗଜରା ଫୁଲହାର ଆଣି ପାଣିଛିଞ୍ଚି ଘରରୁ ରଖିଥାଏ, ବରଗଛ ଓସ୍ତଗଛ ଡାଳରେ ଫୁଲହାର ଝୁଲେଇ ଦେଲା । ଗଛମୂଳରେ ବେଦି କରି ଖୋଁଟି ପକାଇଥାଏ । ବରଗଛ କନିଆ, ଓସ୍ତଗଛ ବର ବାହାଘର କଲା । କଳା ସୁନେଲି ଗାର ଟଣା କାଚ ଅଠପଟ ଆଣିଥିଲା । ନାଲି ଶଙ୍ଖା ସୁନାପଟ ବି କିଣିଥିଲା । ବରଗଛ ଡାଳ କେନାରେ ଝୁଲାଇ ଦେଲା । ବରଗଛ ପାଇଁ ନାଲିରଙ୍ଗର ଆଲପଡ଼ା ଶାଢ଼ୀ ଖଣ୍ଡେ ଆଣି କେଉଁ ଦିନରୁ ପେଟରାରେ ରଖିଥିଲା । ଗଛରେ ବେଢ଼ାଇ ଦେଲା । ଓସ୍ତଗଛ ଡାହିରେ ଏତଲା ଚଉଡ଼ା ଧଡ଼ିବାଲା ଧୋତି ଖଣ୍ଡେ ବାନ୍ଧି ଦେଲା । ପୁରୋହିତ ମନ୍ତ୍ର ପଢ଼ୁଥାନ୍ତି । ସେ ବରଣ କରି ଓସ୍ତଗଛର ତଳ ଚେରକୁ ଧୋଇଦେଲା । ବରର ତ ଗୋଡ଼ ଧୋଇବାକୁ ହେବ । ପିଢ଼ା ଖଣ୍ଡିକ ହଳଦି ବୋଳା ହୋଇ ନ ଥିଲା ବୋଲି ଭଣ୍ଡାରୁଣୀ ଉପରେ ରାଗ ଚଢ଼ିଲା, ହାତଗଣ୍ଠି ପଡ଼ିଲା । ବରଡାଳ ଓସ୍ତଡାଳକୁ ପୁରୋହିତ ମନ୍ତ୍ର ଚଢ଼ି ବାନ୍ଧିଦେଲା । ତା ଆଖିରେ ଆଉ ଲୁହ ଜାଗା ଧରିଲା ନାହିଁ, ଗାଲ ବୁଡ଼ାଇ ତଳକୁ ବୋହି ଚାଲିଲା । ସେ କଥା

କହିପାରୁ ନଥାଏ । ଖାଲି ଗଛଡାଳ ଦୁଇଟାକୁ ଧରି ଝୋ ଝୋ କାନ୍ଦି ଉଠୁଥାଏ । ସେ ଲୁହ ପୋଛି ପୁରୋହିତଙ୍କ ଗୋଡ଼ ତଳେ ପଡ଼ିଲା ।

ତାହାପରେ ହେବା ବହୁତ ଦିନ ହୋଇଗଲାଣି । ଗଛ ତାର ଖୁବ୍ ବଡ଼ ହୋଇଗଲେଣି । ସେ ବି ଖୁବ୍ ବୁଢ଼ା ହୋଇ ଗଲାଣି । ଆଜିକାଲି ଯେତେବେଳେ ପାରେ ସେତେବେଳେ ସେ ଆସି ଗଛମୂଳ ପିଣ୍ଡିରେ ଶୁଏ । ଭଲ କିଛି ଘଟିଲେ ସେ ଧାଇଁ ଆସେ । ମନ୍ଦ ଘଟିଲେବି ସେ ନ ଆସି ରହି ପାରେନା । ଆଉ ତାର କିଏ ଅଛି ତାହାକୁ କହିବ ସେ । ଅସୁନ୍ଦର । ତାକୁ ସମସ୍ତେ ଥଟ୍ଟା କରନ୍ତି । ସେ ପାଗଳ । ସମସ୍ତେ ତାଳି ପିଟନ୍ତି । ଯେଉଁ ମଣିଷଙ୍କ ମାଙ୍କରେ ସେ ମିଶିଛି, ସେମାନେ କଥା କହନ୍ତି । ସେ କଥାରେ ଦରଦ ନ ଥାଏ । ଖାଲି ବିଦ୍ରୂପ ଥାଏ । ଏ ଗଛ ଦୁଇଟାଙ୍କ ପାଖରେ ସେ ତାର ଦୁଃଖ ସୁଖ ସବୁ କହେ । ଗଛ କଥା କହନ୍ତିନି ସତ ତାକୁ ଜଣାଯାଏ ଗଛର ପ୍ରତି ଡାଳ ପତ୍ରରୁ ଯେମିତି ସହାନୁଭୂତି ଝରି ପଡ଼ୁଛି । ସେଦିନ ନଥ ସାମଲ ତାକୁ ମାଇଲା । ତା ମୁଣ୍ଡକୁ ପିତ ଚଢ଼ିଗଲା । ତାକୁ ପିଟି ସାବାଡ଼ କରିବ ବୋଲି ଠିକ୍ କରି ଗଛମୂଳକୁ ଆସିଲା । ଦେଖିଲା ପାଣ ସାହି ରତନା ବରଗଛର ବଡ଼ ଡାହଟେ ହାଣି ପକାଇଛି । ଗୋରୁଙ୍କୁ ଡାଳରୁ ପତ୍ରଗୁଡ଼ାକ ଖାଇବାକୁ ଦେଇ ଗଛମୂଳ ଛାଇରେ ଶୋଇଛି । ତେଣୁ ତ ରାଗି କରି ସେ ଆସିଥିଲା । ରତନାକୁ ପିଟିବାକୁ ଧଉଡ଼ିଲା । ରତନା ଡରରେ କୁଆଡ଼େ ନ ଯାଇ ଗଛମୂଳେ ବସି ଥରୁଥାଏ । ସେ ଗଛ ଉପରକୁ ଚାହିଁଲା । ଗଛରୁ ଡାଳ ହଣା ଯାଇଛି । ଗଛର ଦେହ କାଟି ଦିଆ ହୋଇଛି । ତେବେ ବି ରତନା ତା ଛାଇରେ ଶୋଇଛି । ରତନାଠୁ ଗଛର ଛାଇ ଛଡ଼େଇ ନେଇନି । ତା ମନ ବଦଳିଗଲା । ସେ ରତନାକୁ ବହୁତ ବୁଝେଇଲା । ନଥ ସାମଲକୁ ମାରିବ ବୋଲି ଓଲଟି ତା ପୁଅକୁ ବାଟରୁ ପିଟିଲା ଦିଅଣ୍ଡା ଦେଇ ଆସିଲା । ଥରେ ତା ପଚିଲା ଧାନ କିଆରୀରେ ଗାଈଆଳ ଟୋକାଏ ଗୋରୁ ପୂରେଇ ଦେଲେ । ସେଦିନ ଦୁଇ ଜଣଙ୍କୁ ଚାପଡ଼ ଗୋଟାଏ ଲେଖାଏ ଦେଲା । ତା ପରେ ଛୁଆଗୁଡ଼ାକ ମେଣ୍ଟବାନ୍ଧି ଗୋଡ଼େଇଲେ । କିଛି ନ ପାଇ ସେ ଧାଇଁ ଆସି ଓସ୍ତଗଛ ଉପରକୁ ଚଢ଼ିଗଲା । ଯାଇ ଉପର ଡାଳରେ ବସିଲା । ପିଲାଏ ବି ଚଢ଼ି ପାରିଲେ ନାହିଁ । ଟେକା ମାଇଲେ ଯେ ଉପରକୁ ଯାଇ ପାରିଲା ନାହିଁ । ଗଛଲାଗି ସେଦିନ ସେ ରକ୍ଷା ପାଇଗଲା । ସେଦିନ ଭଉଣୀ ମଲା ବୋଲି ସେ ଖବର ପାଇଲା ଗୋଟିଏ ବୋଲି ଭଉଣୀ ଥିଲା ସେ ବି ଚାଲିଗଲା । ଦୁଃଖରେ ତାର ଛାତି ଫାଟିଗଲା । ତାହାକୁ କିଛି ନ କହି ଗଛମୂଳକୁ ଆସିଲା । ବେଦୀ ଉପରେ ଶୋଇପଡ଼ି ଗଛକୁ ଚାହିଁ କାନ୍ଦିଲା । ଗଛରୁ ଶିର ଶିର ଥଣ୍ଡା ପବନ ବାଜି ତା ଆଖି ଲାଗିଆସିଲା । ସେ ସବୁ ଭୁଲି ଶୋଇ ପଡ଼ିଲା ।

ପଦ୍ମନାଭ କେତେ ନା କେତେ କଥା ଭାବ ଯାଉଥାଏ । ସବୁ ସବୁ ତା ଆଖିରେ ଲୁହ ଖେଳ ହୋଇଗଲା । ଏଇ ଗଛ ଦୁଇଟାଙ୍କ କଥା ସେ ସବୁବେଳେ ଭାବୁଛି । ସ୍ୱାଙ୍କର ପାଇଁ ସେ ହସିଛି । ସେ କାନ୍ଦୁଛି । ଏହି ହସ କାନ୍ଦ ଭିତର ଦେଇ ତାର ସାରା ଜୀବନଟାକୁ ସେ ଉପଭୋଗ କରୁଛି । ତାର କେହିନାହିଁ ଦୁନିଆରେ । କିନ୍ତୁ ସେ ଯେମିତ ତାର ଅତି ଆପଣାର ଗଛ ପାଇଁ ସବୁବେଳେ ବ୍ୟସ୍ତ ରହୁଛି । ତାକୁ ସମସ୍ତେ ପାଗଳ କହନ୍ତି । ଗଛଟା ପାଇଁ କାନ୍ଦୁଛି ବୋଲି ଥଟ୍ଟା କରନ୍ତି । ଗଛ ପାଇଁ କାନ୍ଦିଲେ ସେ କେବଳ ଶାନ୍ତି ପାଏ ।

ପଦ୍ମନାଭ ଗଛମୂଳରେ ଶୋଇ ରହିଥିଲା । ଚାରି ଜଣ ଟୋକା ଆସି କାନ୍ଧରୁ ବୁକୁସ୍ ଓହ୍ଲାଇ ଦମ୍ ମାରିଲେ । ଗାମୁଛାରେ ବହି ହେଉ ହେଉ ଜଣେ କହିଲା— "ଧନ୍ୟ ଧନ୍ୟ, ଏ ଗଛ ଯିଏ ଲଗେଇଛି, ଏଠି ବସିଲେ ମଣିଷର ପ୍ରାଣ ଫେରି ଯାଉଛି ।" ଆଉ ଜଣକ ଗୁଆକାତିରେ ଗୁଆ ଖଣ୍ଡ, ଖଣ୍ଡ, ଚୁର୍ଣ୍ଣ କିଛିଏ ପାଟିରେ ପକାଇ ଢେପ ଗିଳି କହିଲା—"ଗଛ ଦୁଇଟା କ ବାଗରେ ହୋଇଛନ୍ତି, ସତେ ଯେମିତ କିଏ ଚିତ୍ର କରି ଆଙ୍କିଛି କେଡ଼େ ସୁନ୍ଦର ଦିଶୁଛନ୍ତି ?" ପଦ୍ମନାଭ ଟେକୁଣ୍ଟା ଟେକ ଅନେଇଲା । ଆଉ ଜଣେ ଫାଟିଗଲା ବର ଫଳଟେ ଦେଖି କହିଲା—'ଏଇ ମନ୍ଦିରୁ ଏଇ ତରୁ—ଦେଖି ହସିଲେ ରାଜା ବୁରୁ ।" କେତେ ଶ୍ରେଷ୍ଠ ମନ୍ତ୍ରିରୁ କେଡ଼େ ଗଛ ହୋଇପାରୁଛି । କଲେ ସବୁ ହୁଏ । ଅଧିକ ହେଉଛି ମନ । ପଦ୍ମନାଭ ଫଳଟେ ଆଣି ଚପି ଦେଲା । ଶ୍ରେଷ୍ଠ ମନ୍ତ୍ରି ମେଞ୍ଚେ ବାହାର ପଡ଼ିଲା । ସେ ଖୁବ୍ ଜୋରରେ ହସି ପକାଇଲା । ଏତେ ଶ୍ରେଷ୍ଠ ମନ୍ତ୍ରିରୁ ସେ ଏତେ ବଡ଼ ଗଛ କରିଛି । ବାହାମୂଳ ତାର ଡେଇଁ ଉଠିଲା । ବାଟୋଇ ଚାରି ଜଣ ତାଟକା ହୋଇ ଚାହିଁଲେ । ଚତୁର୍ଥ ଜଣକ କହିଲା—"ଜାଣନା କି ଏଇ ପାଗଳା ପରା ଏ ଗଛ ଲଗାଇଛି । ସବୁବେଳେ କି ଖରା କି ବର୍ଷା ଏଇଠି ଆସି ପଡ଼ିଥିବ ।" ପ୍ରଥମ ଜଣକ କହିଲା "ହଁ ଭାଇ, କାହା ହାତରେ କଣ ହେଉଛି କିଏ କହିବ ? କାହାର ସୁନା ଛୁଇଁଲେ ମାଟି ତ, କାହାର ମାଟି ଛୁଇଁଲେ ସୁନା । ଏଇ ଗାଁ ଚନ୍ଦ୍ରଶେଖର ବାବୁଙ୍କୁ ଦେଖୁନା । କେଡ଼େ ବଡ଼ ବିଦ୍ୱାନ ଲୋକ । ବଡ଼ ପୁଅ ଉପଟି ହୋଇଚ । ନାଁ ବୁଡ଼ାଉଛି । ସାନ ପୁଅପାଇଁ ବାପ କେତେ ଚେଷ୍ଟା କରୁଛି କୁହନା, କୁହନା । ପାଠ ପଢ଼ିଲାନ । ଶେଷକୁ ଚୋରକର ଜାଲ ଜେଲ ଗଲା । ବଂଶର ନାଁ ପକାଇଲା ।"

ପଦ୍ମନାଭ କାନ ଡେରି ସବୁ ଶୁଣୁଥିଲା । ସେ ଆଖି ଖୋଲି ଭଲ କରି ଗଛକୁ ଚାହିଁଲା । ମଝିରେ ମଝିରେ ଗଛ ଉପରେ ଖରା ଝୋଟି ଦେଲା ଭଳି ଗୁଡ଼ି ହୋଇ ପଡ଼ୁଛି । ଓସ୍ତ ପତ୍ରର ଖରାରେ ଚକ୍ ଚକ୍ କରି ଉଠିଲା । ପବନ

ଜୋରରେ ବନ୍ଦକଲା । ଗଳ୍ପର ପଥ ସବୁ ଘୋଟେ ଅଡ଼କୁ ଆହ୍ୱାନ ଯାଉଛି । ଦେଖି ଦେଖି ଆଖି ତାର ପୂର ହୋଇଗଲା । ସେ ତଳକୁ ଚାହିଁଲା । ସାଗୁଆ ରଙ୍ଗର ଘାସ ଉପରେ ଲାଲ୍ ବରଫକୁ ଗାଧିବ ବୋଲି ପୋଡ଼ାକାଠ ନଦୀରେ ହୋଇ ପଡ଼ୁଛି । ସେ ଆଖି ବୁଜିଲା । ଓଠରୁ ତାର ହସ ଟିକେ ଖସିଗଲା । ଚନ୍ଦ୍ରଶେଖର ବାବୁଙ୍କ ପୁଅ ସ୍କୁଲ କରୁଛି, ଖେଳ ଯାଉଛି, ଦପ୍ତରିଁ ବଡ଼ ହୋଇନ ଚନ୍ଦ୍ରଶେଖର ବାବୁ ଝିଅ ଆଗରୁ ତାକୁ ଟେକି ନେଇଥିଲେ···ସେ ଝିଅ ଆଗରୁ ଗଳ୍ପକୁ ଅଣିଥିଲା—ତା ଗଳ୍ପ ବଡ଼ ହୋଇଛି—ଗ୍ରାମ ଦେଇଛି—ସେଠି ଚଢ଼େଇ ବସା କରୁଛି । ଆଃ··· ପଡ଼ି ତାକୁ ନିଦ ମାଡ଼ି ଆସୁଥିଲା ସେ ଦେଖୁଥିଲା ଗଳ୍ପର ଅଗ ତାର ଘରଗଳୁ ଛୁଇଁଛି···ଗଳ୍ପର ଷଣ୍ଢି ଠାକୁରାଣୀ ଗଳ୍ପଠୁଁ ଡେର ମୋଟା···ଦର ଭଲା ଦୂର ଜଙ୍ଗଲ·········



# ମୁକ୍ତି

● ଡକ୍ଟର ସୁଧାନାଥ ରଥ

ଅନାମ ପ୍ରଧାନ ପରି ଆଜି ମଧ୍ୟ ତାର ଏକଚାଳିଆ ମଇଳାପାଣି ବୁହା ଗାଡ଼ି ଉପରେ ବସିପଡ଼ି ସକାଳୁ ରାଜାବଗିଚା ରାସ୍ତାରେ ଦଶ ବାର ଧରି ବହୁବର୍ଷ ହେଲା ସେହି ରାସ୍ତାରେ ସେହିପରି ସକାଳେ ସକାଳେ ତାର ଗାଡ଼ି ସେହିପରି କେଁ କଟର ଶବ୍ଦ କରି ଚାଲିଥାଏ । ଗୋଟାଏ ପରେ ଗୋଟାଏ ପାଦ ଥୁଆଟା ବଳଦ ତା ଆଖି ଆଗରେ ତା ପାଞ୍ଚଣ ନାଚି ଯାଉ ଯାଉ ସେହିପରି ମଇଳା ପାଣି ବୋହି ବୋହି ମଲେଣି । ସବୁ ଦିବସ ସମାନ । ଓଜର ନାହିଁ, ଆପତ୍ତି ନାହିଁ, ଦୁଃଖ ନାହିଁ—ସୁଖ ନାହିଁ—ରକ୍ତମାଂସଧାରୀ କଳକବ୍ଜା ଯନ୍ତ୍ର ଯେପରି । ସେମାନଙ୍କର ବୈଶିଷ୍ଟ୍ୟ ହୀନ ଜୀବନରେ ଯେପରି କୌଣସି ପରିବର୍ତ୍ତନ ନାହିଁ । ଅନାମର କାମରେ ମଧ୍ୟ କୌଣସି ନୂତନତା ନାହିଁ । ସେଦିନ ବଳଦର ଯେପରି ଚଞ୍ଚଳ ଯିବାର ଆଗ୍ରହ ନ ଥିଲା, ଅନାମର ମଧ୍ୟ କାମକୁ ଯିବାର ସ୍ପୃହା ନ ଥିଲା । ବୁଢ଼ାହାଡ଼ାଟି ନେହେସ ବୋହୁଥିବା ଆଖି ଦୁଇଟି ଅଧା ବୁଜି ବୁଜି କଣ ସ୍ୱପ୍ନ ଦେଖୁଥିଲା କେଜାଣି—ଅନାମର ଜାଣିବାର ଉପାୟ ନାହିଁ—ଇଚ୍ଛା ବି ନାହିଁ । ଏ ବିଷୟରେ ମୁଣ୍ଡ ଘୂରାଇବାର ଆଗ୍ରହ ପୃଥିବୀରେ ବୋଧହୁଏ କାହାରି ନାହିଁ ।...

ଅନାମର ଭାବନାର ଆଜି ଆଉ ଅନ୍ତ ନାହିଁ । ସେପରି କିଛି ନୂତନ ଭାବନା ନ ହେଲେ ବି ତାର ଆଜିର ଭାବନା ବଡ଼ ଗମ୍ଭୀର ଓ ବଡ଼ କରୁଣ । ପ୍ରତିଦିନର ସେହି ଏକ ଢଙ୍ଗ ବିଷାଦଭରା ଭାବନା ଖାଲି । କେବଳ ପିଲାଗୁଡ଼ାକ ଗଛୁଆ, ଗୋବରା, ମାଳି, ନେତ ଆଉ କଳୀ ଖୋରଣୀ ତା ସ୍ତ୍ରୀ ଯେଲ ଆଜିବ ସେଇ ଭାବନା; ତାଁ ଛଡ଼ା ଆଜି ଆଉ ଗୋଟିଏ ଅଧିକ ବିଷାଦମୟ ଭାବନା—ଦୁଇବର୍ଷର ଜରୁଆ ହିଁସ ନେତର ଔଷଧ—ଯାହା ନେଇ ଆଜି ଭୋରରୁ ସ୍ତ୍ରୀ ସହିତ ଲଢ଼ି ଯାଇଛୁ ତାର ପଟେ କଲି—ଝୁମ୍ପ ନଡ଼ ଧରଣର କଳ ମାଡ଼ ପିଟା ପିଟି—ସ୍ତ୍ରୀର ମୁଣ୍ଡ ଫାଟି ହୋଇ ଯାଇଛୁ । ଗାଲରେ ଅନାମ ହାତର ପାଞ୍ଚ ଆଙ୍ଗୁଠି ରକ୍ତରେ ଅଙ୍କି ହୋଇ ଯାଇଛୁ । ରାଗରେ ସେ ହାଣ୍ଡି କୁଣ୍ଡେଇ ବାଡ଼େଇ ଦେଇଛୁ । ଗଛୁଆ, ଗୋବରା, ମାଳିକୁ ବି ଚାପଡ଼େ ବିଧ ଦାଜି ଯାଇଛୁ, ହୁଲସ୍ଥୁଲ ପାଣି, କାନ୍ଦଣା ଭିତରୁ ଦୌଡ଼ି ଚାଲି ଆସିଛୁ ସେ ଗାଡ଼ି ଧରି । କିନ୍ତୁ ସମସ୍ତଙ୍କର କାନ୍ଦଣା ଭିତରୁ ଜରରେ ଥରୁଥିବା ନେତର କରୁଣ କାନ୍ଦଣା ବର୍ତ୍ତମାନ ବି ତାର ଛାତି ଭିତରଟାକୁ ଓଲଟ ପାଲଟ କରିଦେଉଛୁ । ଅଠଦିନ ହେଲା ନେତକୁ ଜର । ଖାଇବାକୁ ନାହିଁ—ଔଷଧ ଟୋପାଏ ଦେଇ ପାରିନାହିଁ । ଡାକ୍ତରଖାନାରେ ଓଳିଏ କାଳ ଠିଆ ହୋଇ ହୋଇ ଯେଉଁ ଟୋପାକ ଔଷଧ ପାଇଥିଲା ସେଥିରେ କିଛି ହେଲା ନାହିଁ । ପଇସା ନ ହେଲେ କୌଣସି ଡାକ୍ତରର ଔଷଧ କାମ କରେନା ବୋଲି ତାର ଧାରଣା

ହୋଇଗଲଣି । ତା ଛୁଡ଼ା ଜରରେ ଅରୁଥିବା ପିଲାଟିକୁ ଧରି କେତେଘଣ୍ଟା ଠିଆ ହେବ ଡାକ୍ତରଖାନାରେ । ସ୍ୱାର ମଇଳା ପାର୍ଣିବୁହାଳ ମେହେନ୍ତରର ସେ—ଓଭରଶାର ବଗିଚ ଡାକ୍ତରଖାନାରେ— ଯା ଆଗରେ ଗଣ୍ଡା ଗଣ୍ଡା ଗାଡ଼ି ମଟର ଠିଆ ହୋଇଥାଏ, ଶହ ଶହ ବାବୁ ଭାସ୍ଥା ଯିବା ଆସିବା କରୁଥାନ୍ତି, ସେଠି ତା'ପରି ସ୍ୱାଲେକର ସ୍ଥାନ କେଉଁଠି ? ତାର ପିଲାର ଦାମ୍ କେତେ ଯେ ଡାକ୍ତରମାନେ ବ୍ୟସ୍ତ ହୋଇ ତା ଛୁଆକୁ ଦେଖିବେ । ତା ନେତ କଣ ସତେ ଆଉ ବଞ୍ଚିବ ?— ଏହି ଗୋଟିଏ କଥା ତା ମନରେ ବା'ର ବା'ର ଆସି ଯାଉଛି । ଖାଲି ନେତା ମା କେତେ କାକୁତି ମିନତି କଲା ତା ଖାଉନ୍ଦଙ୍କ ଆଗରେ, ତାର ଆସନ୍ତାମାସ ଦରମାରୁ ଆଗତୁରା ଟଙ୍କା ଦୁଇଟା ପାଇଁ—ତା ମିନତି କେହି ଶୁଣିଲେ ନାହିଁ । ସେ ସୁଶଦନ ହେଲା କାମକୁ ଯାଇପାରି ନଥିଲା । ନେତ ପାଇଁ ତେଣୁ ତାକୁ କାମ କରିବାପାଇଁ ଏକାବେଳକେ ବନ୍ଦ କରି ଦିଆଯାଇଛି —ଆଉ ଆଗତୁରା ଟଙ୍କା ମାଗିବା କଥା ଶୁଣି ବାବୁ, ମା, ଚାକର ସମସ୍ତେ ପାଟି କରି ଉଠିଲେ । ମା କହିଲେ —ଆଜିକାଲି ଏ ଛୋଟଲୋକଗୁଡ଼ାକର ବଡ଼ ଦେମାକ ବଢ଼ିଗଲାଣି । କାମ ନ କରି ଟଙ୍କା ମାଗିବାକୁ ଟିକିଏ ବି ଲାଜ ଲାଗୁନାହିଁ— ଯା, ଯା, ତୋର ଆଉ କାମକୁ ଆସିବା ଦରକାର ନାହିଁ । ଭାତ ଫୋପାଡ଼ିଲେ ବହୁତ କୁକୁର ଦଉଡ଼ି ଆସିବେ—ତୋତେ ଏତେ ଖୋସାମତ କାହିଁକି ? ବାବୁ ତାଙ୍କର ଗଧିଆ ବାଘପରି ବିରାଟ ଆଲସେସିଆନ୍ କୁକୁରକୁ ଟେଗଲ କରୁକରୁ କହିଲେ, ଦିଅ ବାହାର କରି ଏଟାକୁ, ଆଉ ଜଣକୁ ରଖ —ବଡ଼ ହଇରାଣ କଲାଣି ଟଙ୍କା ଟଙ୍କା ବୋଲି । ନେତମା ସାଧ ଡଗଡ଼ ପର୍ଯ୍ୟନ୍ତ ବସି ବସି ଶେଷରେ ଖାଲି ହାତରେ ଫେରି ଆସିଲା ଘରକୁ । ଅନାମ ନେତକୁ କାନ୍ଧରେ ପକାଇ ବୁଲୁବୁଲୁ, ସବୁ ଶୁଣିଲା, କିଛି କହିଲା ନାହିଁ—କହିବାର ବା ତାର କଣ ଅଛି । ନିଜେ ବହୁତ କହିଧୋଇ ଦୋକାନରୁ ଦୁଇ ପଇସାର ବାର୍ଲି ଆଣି ନେତକୁ ଦେଲା, ଆଉ ସମସ୍ତେ ଉପାସରେ ଶୋଇଲେ । କିନ୍ତୁ ଭୋକିଲା ପେଟେ ଶୋଇହୁଅନ୍ତି କେତେକ । କାଁ ଭାଁ କରି ରାତି ସାରା ବିରକ୍ତ କଲେ । ଭାତ ବଦଳରେ କିଏ ସ୍ୱପଡ଼େ ଗୋଳାଟେ ଖାଇ ବାଧ ବାଧ ହାଲିଆ ହୋଇ ଭୋର ବେଳକୁ ଶୋଇ ପଡ଼ିଲେ ।

ଭୋରରେ କାମକୁ ଯିବାକୁ ଅନାମ ଉଠିଲା । କାମକୁ ନ ଯାଇ ବା ସେ କରିବ କଣ ? ତା ସ୍ତ୍ରୀ ଆସି ତା ପାଖରେ ଠିଆ ହେଲା—ଅନାମ ତାକୁ ଦେଖିଲା, କିନ୍ତୁ ନ ଦେଖିଲା ପରି ଘରୁ ବାହାରି ଆସୁଥିଲା । ଗେଲି କହିଲା "ଦେଖ, ଆଜି କିଛି ଟଙ୍କା ନ ହେଲେ ଆମେ ସବୁ ନଇରେ ବୁଡ଼ି ମରିବୁ" ନିଃସହାୟ ଅନାମ ଗେଲିର ଏକଥା ଶୁଣି ରାଗରେ ଜଳିଗଲା । କହିଲା, ଯା ତୋ ବାପଘରୁ ଟଙ୍କା ନେଇଆ ।" ସ୍ତ୍ରୀ ଲୋକେ ଯେତେ ବଡ଼ ହେଲେ ମଧ୍ୟ ତା ବାପଘର ସହିତ କିଛି ସମ୍ପର୍କ ନ ଥିଲେ

ମଧ୍ୟ ସ୍ୱାମୀଠାରୁ ବାପଘରର ଅପମାନ ସହି ପାରନ୍ତି ନାହିଁ । ଗେଲି ଗର୍ଜି ଉଠିଲା ।" ପିଲାକୁ ପୋଷିବାର ତ ବଳ ନାହିଁ ଆଉ ମରଦ ପଣିଆ ଦେଖାଉ ମୋତେ ମୋ ବାପଘରୁ ଧରି ଆଣିଥିଲୁ କଅଁରେ ମାଡ଼ିଖିଆ ଝାଡ଼ୁଦାର ଘରର ପିଲା ।"

ପୁରୁଷ ପକ୍ଷରେ ମଧ୍ୟ ସ୍ତ୍ରୀଠୁ ବଳି ବଡ଼ ଅପମାନ ଆଉ କଣ ହୋଇପାରେ ? ଅନାମ ଏକଥା ଶୁଣି ଆଉ ସହି ପାରିଲା ନାହିଁ—ପେଟ ଭିତରେ ଜଳୁଥିବା କ୍ଷୁଧାଗ୍ନି କ୍ରୋଧାଗ୍ନିରେ ପରିଣତ ହୋଇ ଦେହସାରା ଯେପରି ଜାଳି ଦେଇଗଲା । ସାରା ଦୁନିଆ ପ୍ରତି ଯେତେ କ୍ରୋଧ ଯେତେ ହିଂସା—ପିଲାଙ୍କପାଇଁ ଯେତେ ମାୟା ମମତା ଯେତେ ଦୁଃଖ ସବୁ ମିଶି ତାର କ୍ରୋଧାଗ୍ନିକୁ ଆହୁରି ଉଦ୍ଦୀପିତ କରି ପକାଇଲା । ଆଗରେ ଯାହା ପାଇଲା ତାକୁ ଆଘାତ କଲା—ବିଜୁଳି, ବନ୍ୟା ଭୂମିକମ୍ପର ଯେପରି ଧ୍ୱଂସ କରିବାରେ ବାଛି ବିଚାର ନାହିଁ, ତାର ମନରେ ଅଗ୍ନ୍ୟୁତ୍ପାତର ସେହିପରି କୌଣସି ବାଛି ବିଚାର ରହିଲା ନାହିଁ । ଅଳ୍ପ ସମୟ ଭିତରେ ଗୋଟିଏ ପାରିବାରିକ ଝଡ଼ ସୃଷ୍ଟି କରି ସେ ଚାଲିଲା ତାର ଗାଡ଼ି ଧରି । କିଛି ସମୟ ପରେ ସେ ବଡ଼ ଦୁର୍ବଳତା ଅନୁଭବ କଲା । ଝଡ଼ ବନ୍ୟା ପରେ ସାରା ଦୁନିଆ ଯେପରି ଅତି କରୁଣ ଓ ଶ୍ରୀହୀନ ଦେଖାଯାଏ, ତାର ସାରା ଜୀବନ ତା ଆଗରେ ସେପରି ନୀରସ ଓ ବେଦନାମୟ ଦେଖାଗଲା ।

ଗାଡ଼ିରେ ବସି ଢୋଲାଉ ଢୋଲାଉ ହଠାତ୍ ଗାଡ଼ିରେ କେଁକଟର ଶବ୍ଦ ବନ୍ଦ ଅତୀତର କେତୋଟି ଅନୁଭୂତିକୁ ପିନ୍ କଣ୍ଟା ପରି ଫୋଡ଼ି ଦେଇଗଲା । ପନ୍ଦର ବର୍ଷ ତଳର କଥା ଦିନ ବାରଟାବେଳକୁ ଖାନନଗର ରାସ୍ତାରେ । ଯେତେବେଳେ ତା ଗାଡ଼ି ଚାଲିଥାଏ, ରାସ୍ତା ଗଛମୂଳେ ଦେଖାହୁଏ ଗେଲି ସହିତ । ସେତେବେଳେ ଗେଲିର ବୟସ ପନ୍ଦର । ମଇଳା ବୋଝ ତଳେ ରଖିଦେଇ ସେ ଯେପରି ତାକୁ ଅପେକ୍ଷା କରି ବସିଥାଏ—ଅନାମ ଥଟ୍ଟାକରି କହେ, 'କାଲେ ଗେଲି, କାହାକୁ ଚାହିଁ ବସିଛୁ ମ ! ଗେଲି କହେ ମଲା ମୋର, ମୁଁ କାହିଁକି ତା ପାଇଁ ବସିବିମ, ମୋ ଅଣ୍ଟା କଟକଟ ହୋଇଯିବାରୁ ଟିକିଏ ବସି ଦମ ମାରୁଛି ନା ।" ଗେଲି ମିଛ କହେ— ଅନାମ ସେ କଥା ବୁଝେ; ଗେଲି ମଧ୍ୟ ବୁଝେଁ ଯେ ଅନାମ ବୁଝେ । କେତେ ଥଟ୍ଟା ତାମସା ହୁଅନ୍ତି—ଗେଲିର ମଇଳା ବୋଝ ଅନାମ ତା ଗାଡ଼ି ଉପରେ ଥୋଇ ନେଇଯାଏ । ଗେଲିର ଗେଲବସର କଥା, ଖିଲିଖିଲିଆ ଯଉବନିଆ ହସ ଭରା ଭରା ମାଂସଳ ଗ୍ରୀବ ଅନାମକୁ ପାଗଳ କରିଦିଏ । ଅନାମର କଳା ମଚମଚ ମୁହଁ, ଲମ୍ବା ତାରପରି ଫୁଲି ଉଠୁଥିବା ଶିରା ଓ ଟାଣ ଟାଣ ମାଂସପେଶୀଗୁଡ଼ିକ ଗେଲିର ଯୌବନର ରସ ପୋଖରୀର ପାଣିକୁ ଦମକାଏ ପବନ ପରି ଥରାଇ ଦେଇଯାଏ । ଅନାମର ହାତ ଗେଲି ଦେହରେ ଲାଗିଲେ ଗେଲିର ମୁହଁ ଦେହ

ଭାଙ୍ଗି ଯାଏ—ସତେ ଯେପରି ତାର ନରମ ଦେହ ସେଠି ଭରିଯିବ । ପାଚିଲା ଡହ ଡହ ଆମ୍ବ ଦେଖିଲେ ବୁଲ୍ବୁଲ୍ ଯେପରି ଏକା ନିଶ୍ୱାସରେ ତାର ରସ ଚପୁଡ଼ି ଶୋଷି ଦେବାକୁ ଚାହେଁ, ଅନାମ ମଧ୍ୟ ଗେଲିକୁ ଛୁଇଁ ଚୁପିଧରି ଏକ ନିଶ୍ୱାସରେ ନିଃଶେଷ କରିଦେବାକୁ ଇଚ୍ଛା ହୁଏ । ମୋଟାମୋଟି ଦୁଇଜଣ ଦୁଇଜଣଙ୍କୁ ପ୍ରାଣ ଦେଇ ଚାହିଁଥିଲେ ଓ ବଡ଼ ବାଧାବିଘ୍ନରେ ଘର କରି ରହୁଥିଲେ । ଖୁବ୍ ଆନନ୍ଦରେ ଘର-ସଂସାର ଚଳିଲା । ସେହି ଆନନ୍ଦ ଦିନଗୁଡ଼ିକର ମଧୁର ସ୍ମୃତି—ଗେଲିର ଗେଲବସରିଆ କଥା ଓ ମିଠାଲିଆ ଗାଳି ଗୁଲାକ ସବୁ ଉପେନ୍ଦ୍ର ଭଞ୍ଜ ଓ ରବୀନ୍ଦ୍ର-ନାଥଙ୍କ କବିତାର ସୀମା ଭିତରେ ଦେଇ ଅନାମର କାନରେ ଆସି ବାଜିଲା ନାହିଁ ସତ, ମନୁଷ୍ୟର ଚିର ସନାତନ ଆଦିମ ସ୍ୱପ୍ନକାର ରଙ୍ଗିନ ଆଲୋକରେ ଅନାମର ମନଗଗନ କିଛି ସମୟ ପାଇଁ ଝଲ୍ମଲ ହୋଇ ଉଠିଲା । କିନ୍ତୁ ଚେରାପୁଞ୍ଜି ଜଙ୍ଗଲର ନଗର ଜଙ୍ଗଲ ଭିତରେ ଅନ୍ଧାନ୍ଧ ଝଡ଼ ବର୍ଷାର ଖେଳ ପରି ତାର ଗହନ ମନ ଭିତରେ ଦୁଃଖ, ଦୈନ୍ୟ, ଭୋକ ଉପାସ, ରୋଗ ଯାଇଆସ କଲା ଚକଚାଲର ଅବଶ୍ରାନ୍ତ ଖେଳ ଚାଲିଥିଲାବେଳେ ମନର ସେହି ଜଳର ସୁଖସ୍ୱପ୍ନର ରଙ୍ଗିନ ବାଦଲ କେତେ ସମୟ ବା ରହିପାରେ ? ବର୍ତ୍ତମାନ ସୁଦ୍ଧା ସେ ଗେଲିକୁ ଭଲପାଏ—ତାର ପିଲା-ମାନଙ୍କୁ ଭଲପାଏ । ସେମାନଙ୍କ ଦୁଃଖ ଦେଖିଲେ ତା ପ୍ରାଣ କାନ୍ଦିଉଠେ—ବେଶୀ ଦୁଃଖ ହେଲେ ମଦ ପିଇ ଗେଲିକୁ ମାରେ, ଗାଳି ଦିଏ, ପରେ ସେଥିପାଇଁ ଦୁଃଖ କରେ, ପିଲାଙ୍କୁ କୋଳରେ ବସାଏ, ଆଉ କେବେ ନିଶାପାଣି ଛୁଇଁବ ନାହିଁ ବୋଲି ଗେଲିର ଦେହ ଛୁଇଁ ଶପଥ କରେ । ବହୁତ ଦିନ ଧରି ମଦ ଖାଇବା ଛାଡ଼ିଦିଏ । କିନ୍ତୁ ଦିନେ ଦିନେ ଅବଶ୍ୟ ଭୁଲିଯାଏ—ସେଟା କିନ୍ତୁ ତାର ଦୋଷ ନୁହେଁ ଦୋଷ ତାର ଦୁର୍ବିଷହ ଜୀବନର ।

ଆଜି ଯାହା ହୋଇଗଲା ତା ଜୀବନରେ ଏପରି କେବେ ହୋଇ ନ ଥିଲା—ମଦ ନିଶାରେ ସେ କେତେଥର ଗେଲିକୁ ନ ମାରିଛି ତା ନୁହେଁ, କିନ୍ତୁ ପୂରା ଚେତନା ଆଉ ସେ କେବେ ଏମିତି ଧନ ନ ଥିଲା—ଭାଙ୍ଗିକି ଏପରି ହେଲା ଯେବ ପାଗଳ ନାହିଁ, ମୁଣ୍ଡ ଭିତରଟା ଘାର ଘୂରି—ଭାବନା ଗୁଡ଼ାକ ଗୋଳମାଳିଆ ହୋଇଗଲା । ଗାଢ଼ ଅନ୍ୟରକମ ଶେଯ କରି ସେ ହିଁ ଏ ଶଯ୍ୟାର ପଡ଼ିଲା । ବାଳକଟି ତାର ଗତାନୁ-ଗତିକ ଗପ୍ପ କାହିଁକି ଏବଂ କାହିଁକି ବୋଧହୁଏ ଅନାମ ମନର ଅବସ୍ଥା । ଅନେକ ସମୟରେ ଲଜିତ ପଶୁ ମଣି କଷ୍ଟ ପାଇଲେ ପଶ୍ଚାତ୍ ତାକୁ ସହାନୁଭୂତି ଦେଖାଏ—ଲଜିତ ପାରେନା । ଅନାମର ବାଳକଟି ଯେପରି ଦୁଃଖୀ ଅନାମ ଠିକ୍ ସେହିପରି ଦୁଃଖୀ—ବଞ୍ଚି ରହିବା ଅଟେ ସେମାନଙ୍କ ପକ୍ଷରେ ଦୁଃଖ । ମୃତ୍ୟୁ ହିଁ ଏକମାତ୍ର ଦୁଃଖ ଯନ୍ତ୍ରଣାର ଅବ୍ୟାହତି ।

ଅନାମ ଭଲ ପଣ ମଇଲା ଧାଂଶି ଦାଳଟି ଦାଳନ୍ତି, ଆଣି ଗାଡ଼ରେ ଭର୍ତ୍ତି କଲା । ମଇଲାଗାଡ଼ର ଦୁର୍ଗନ୍ଧ ପାଣି ଭଳିଆ ନେଳର ଓ ନେଡ଼ର ଲୁହଭଳି ମୁହଁ ଲୁଙ୍କି ମାରିଲା । ପାଣି ଛଡ଼ାଇବାକୁ ଟିକିଏ ଡେରି ହେଲା । ଠିଆହୋଇ ରହିଲା । ଜର୍ଜରିଆ ନୂଆ ପଡ଼ର ଭଲ ହୋଇଥିବା ଝାଳୁଆ ଭର୍ତ୍ତି ପଥ ଜାଣି ଛପରକୁ ଝାଉଁଳ ପଡ଼ିଥିବା ନେଡ଼ଳ ଆରମ୍ଭ ମୂର୍ତ୍ତି ଡାଳ ପେଟ ଭିତରଟାକୁ ଯେପରି ତରଳାଇ ଦେଇଗଲା । ଗୋଟାଏ ପ୍ରକାର ଅବର୍ଣ୍ଣନୀୟ ଆଶଙ୍କାରେ ମେରୁଦଣ୍ଡ ଭିତରେ ଥରଥର କମ୍ପଟାଏ ଯେପରି ଫୋଡ଼ି ଦେଇଗଲା—ଗୁଡ଼, ପେଟ, ସବୁ ଯେପରି ତରଳି ବାହାରକୁ ବୋହିଯିବ ଅଟକାଇବାର ଶକ୍ତି ତାର ନାହିଁ । ଦୁଇ ତିନି ମିନିଟ୍ ପରେ ପୁଣି ଠିକ୍ ହୋଇଗଲା । ହାତ ଦାଳ୍ଟି ଉଠାଇଲା—ଗୋଡ଼ ଆଗକୁ ଆଗକୁ ଚାଲିଲା—ତା ପରେ ବଳଦ ବି ଯନ୍ତ୍ରପରି ଆଗକୁ ଚାଲିଲା, ପୁଣି ମଇଲା ଖାତ ପାଖରେ ଠିଆହୋଇ ଟିକିଏ ଡୋଳେଇ ପଡ଼େ । ଅନାମର ହାତଗୋଡ଼ ପୁଣି କାମ କରି ଯାଆନ୍ତି ତା ପରେ ପୁଣି ବଳଦ ଆଗେଇ ଚାଲେ···

ଆଜି ସକାଳୁ ରାସ୍ତାରେ କେତେ ଝାଞ୍ଜ, ମୃଦଙ୍ଗ ବାଜୁଛି ଗୀତ ଶୁଣାଯାଉଛି । ସ୍ୱାଧୀନତା ଦିବସ ଲାଗି ସହରର କୋଳାହଳମୟ—ଜାତୀୟ ପତାକା ସବୁଆଡ଼େ ଉଡ଼ୁଛି, ବକ୍ତୃତା ହେଉଛି, ଟ୍ରକରେ ବୋଝେଇ ହୋଇ ଲୋକ ସବୁପଡ଼ିଆକୁ ଯାଆ ହେଉଛନ୍ତି ଅନାମର କିନ୍ତୁ ସେଥିପ୍ରତି ନଜର ନାହିଁ । ଏହାର ତାତ୍ପର୍ଯ୍ୟ ବୁଝିବାର ତାର ଶକ୍ତି ନାହିଁ କି ଆଗ୍ରହ ମଧ୍ୟ ନାହିଁ । ତା ଜୀବନରେ କାଲି ଆଜି ଭିତରେ ତ କିଛି ପ୍ରଭେଦ ନାହିଁ—ସ୍ୱାଧୀନତା ବା ସ୍ୱାଧୀନତାର ମୂଲ୍ୟ ତା ଜୀବନରେ କେତେ ? ବର୍ଷ ବର୍ଷ ଧରି ତାର ସେହି ମଇଲାପାଣିଭରା ବଳଦ ଗାଡ଼ି ଡୋଳାଇ ଡୋଳାଇ କେଁ କଟର, କେଁ କଟର କରି ତାର ସେହି ବୈଚିତ୍ର୍ୟ-ହୀନ ଜୀବନ ପଥରେ ଚାଲିଛି । କେଁ କଟର ଶବ୍ଦଟା ଯେପରି ତାର ପ୍ରାଣର ଚିହ୍ନ । ବଳଦ ଜୀବନର ମର୍ମସ୍ପର୍ଶୀ ଆର୍ତ୍ତନାଦ—କେଁ କଟର ଶବ୍ଦ ବନ୍ଦ ହୋଇ ଗଲେ କେହି ବୁଝିବେ ନାହିଁ ସେ ନାହିଁ, ବଳଦ ନାହିଁ କି ତାର ପିଲାପିଲି, ସ୍ତ୍ରୀ କାହାର ଲେଖାଯୋଖା ଅସ୍ତିତ୍ୱ ରହିବ ନାହିଁ । ଅନନ୍ତ କାଳର ସୀମାହୀନ ରାସ୍ତାରେ ଏଇ ଟିକିଏ ଶବ୍ଦହିଁ ଅନାମର ସବୁ କିଛି ଯେଉଁଦିନ ବନ୍ଦ ହୋଇଯିବ, ସେଦିନ ତାର ଜୀବନର ପୂର୍ଣ୍ଣଚ୍ଛେଦ ଆଉ ଗୋଟିଏ ଜୀବନର ସୂଚ ଠିକ୍ ସେହିପରି ଆରମ୍ଭ ହୋଇପାରେ-ତେବେ ଅନନ୍ତ କାଳ ବୁକୁରେ ବିଷାଦଭରା ଏହି ସ୍ପନ୍ଦନଟିର ମୂଲ୍ୟ କଣ ? ଅନିର୍ଦ୍ଦିଷ୍ଟ ରାସ୍ତାରେ ତାପରି ନିଃସହାୟ ଅବସ୍ଥାରେ ଚାଲିବାର ଅର୍ଥ କଣ ? ଅନାମ ଦାର୍ଶନିକ ନ ହେଲେ ମଧ୍ୟ ତା ମନରେ ଓ ତାର ବଳଦ ଭିତରେ ଏହି ପ୍ରଶ୍ନଟା ଯେ ଶବ୍ଦହୀନ ଭାଷାରେ ଉଠି ନଥିବ ତା କିଏ କହିବ ?···

ଅନାମ ଗାଡ଼ିରେ ପ୍ରତିଦିନ ପରି ମଇଳା ପାଣି ଭର୍ତ୍ତି କଲା— କିନ୍ତୁ ଦୀର୍ଘ ରାସ୍ତା ଦେଇ ଖାନନଗର ଆଡ଼େ ଯିବାରେ ତାର ଯେପରି ଆଉ ସ୍ପୃହା ନ ଥିଲା । ବଳଦଟି ଅନାମର ମନକଥା ବୋଧହୁଏ ବୁଝିପାରି ରାସ୍ତା ପାଖ ଗୋଟିଏ ବୃକ୍ଷମୂଳେ ଆସି ଠିଆ ହୋଇ ବିଶ୍ରାମ ନେବାକୁ ଚାହିଁଲା । ଅନାମ ଗାଡ଼ିକୁ ଆଉଜି ଘୁମେଇ ପଡ଼ିଲା । ବଳଦଟି ମାତ୍ର ଓଡ଼ାଉ ଓଡ଼ାଉ ଠିଆ ଠିଆରେ ଢୋଳେଇ ପଡ଼ିଲା । ଗାଡ଼ିର କେଁ କଟର ଶବ୍ଦ ବନ୍ଦ ହେଲା । ଅନାମ ଜୀବନରେ ଯେପରିକି ଗୋଟିଏ ଫାଙ୍କା ପାଇଲା—ମନୁଷ୍ୟର ଅବଜ୍ଞା, ଜୀବନର ଅବସାଦ, ସାମାଜିକ ଅତ୍ୟାଚାର ପ୍ରଭୃତି ଜାଗ୍ରତ ଜୀବନର ତିକ୍ତ ଅନୁଭୂତି ଉପରେ ନିଦ୍ରାର କୃଷ୍ଣ ପରଦା ଘୋଡ଼ାଇ ହୋଇ ପଡ଼ିଲା । ବଞ୍ଚି ରହିବାର ତିକ୍ତତା ଅପେକ୍ଷା ସ୍ପନ୍ଦନହୀନ ମୃତ୍ୟୁର ସ୍ପର୍ଶହୀନ ଶୂନ୍ୟତା କ'ଣ ବାଞ୍ଛନୀୟ ନୁହେଁ ?

ଏହିପରି କେତେ ସମୟ ଗଲା ଅନାମ ଜାଣେନା । ଘଣ୍ଟ, କରତାଳ ମୃଦଙ୍ଗ, ଶବ୍ଦରେ ହଠାତ୍ ଯେପରି ମହାଶୂନ୍ୟତା ଭିତରୁ କଟକର ନାଲି ଧୂଳି ରାସ୍ତାରେ ଆସି ଜାଗ୍ରତ ହୋଇପଡ଼ିଲା । ଅନାମ ଗୋଳମାଳ ଭିତରେ ନିଜର ଅବସ୍ଥିତି ବିଷୟରେ ହଠାତ୍ କିଛି ବୁଝି ପାରିଲା ନାହିଁ । ଆଖିର ସ୍ୱପ୍ନ ପରଦା ଏତେ ଶୀଘ୍ର ଉଠେଇବାକୁ ଯେପରି କିଏ ନାରାଜ । ଦୁନିଆର କଳରବର ବାହାରେ ଅନନ୍ତ ଶୂନ୍ୟତା ଭିତରୁ ଆସି ଜୀବନ ବଜାରରେ ତଥାକଥିତ ସଭ୍ୟ କଳାବେପାରୀଙ୍କ ହୃଦୟହୀନ କାରବାର ଦେଖିବାର ଆଗ୍ରହ ତାର ଯେପରି ନ ଥିଲା ତଥାପି ଆଖି ଖୋଲି ଚାହିଁଲା · ଦେଖିଲା ରାସ୍ତା ଆରପାଖେ ଦେଉଳଆଗରେ ନହୁଲେଇ— ଘଣ୍ଟା ଓ ମୃଦଙ୍ଗର ଗୋଳମାଳିଆ ଶବ୍ଦ ଶୁଣା ଯାଉଥାଏ । ଆନନ୍ଦ କୋଳାହଳ ମଧ୍ୟରେ ଜୀବନର ବିରାଟ ଚଞ୍ଚଳତା । ବୋଧହୁଏ ସେ ସେହିପରି ପଡ଼ି ରହିଥାନ୍ତା —ଏ ଚଞ୍ଚଳତା ତା ଜୀବନକୁ ଟିକିଏ ହେଲେ ସ୍ପର୍ଶ କରିପାରୁ ନଥିଲା; କିନ୍ତୁ ହଠାତ୍ ଜଣେ ବାବୁ ଆସି ତା ବେକରେ ଗୋଟିଏ ଫୁଲମାଳ ପକାଇ ଦେଇ ତା ହାତଧରି ଟିକିଏ ଟାଣିଦେଲେ । ସେ କିଛି ବୁଝି ନ ପାରି ଚମକି ଠିଆହୋଇ ପଡ଼ିଲା । ଏ କଣ ! ତା ବେକରେ ଫୁଲମାଳ କାହିଁକି ? ସେ କଣ କଟକର ଧୂଳି ରାସ୍ତାରେ ତା ମଇଳାପାଣି ଗାଡ଼ି ପାଖରେ ଠିଆ ହୋଇ ନାହିଁକି ? ସେ କଣ ମୃତ୍ୟୁର ଆରପାରିରେ ? ତା ହେଲେ ସେଠି ବି କଣ ଧଳା ଧଉଳିଆ ବାବୁମାନେ ତାକୁ ଉପହାସ ଓ ଅତ୍ୟାଚାର କରିବା ପାଇଁ ହାଜର ! ତା ପରେ ଆସି ଜଣେ ବାବୁ ପଚାରିଲେ "ତୁମ ନାଁ କଣ" ?

ଅନାମ ସେ ବାବୁଙ୍କ ମୁହଁକୁ ଖାଲି ଚାହିଁଲା । ତା ବଳଦ ଗାଡ଼ି ଚକର ଗଡ଼ ଗଡ଼ ଶବ୍ଦକରି ତା କାନ ପାଖରେ ଘୂରି ବୁଲିଲା ପୁଣି ସେହି ପ୍ରଶ୍ନ "ତୁମ ନା କଣ ?"...ଅନାମ ନାଁ କହିଲା । ନା ପରେ ଆଉ

କେତେଜଣ ବାବୁ ଆସି ତାକୁ ଘେରିଗଲେ । କିଏ ପେଣ୍ଟ କୋଟ ପିନ୍ଧିଛି ତ କିଏ ଅଣ୍ଟା ଯାଏ ସରୁ ଖଦଡ଼ର ପଞ୍ଜାବି । କିଏ ଫିନ୍ ଫିନ୍ କୁଞ୍ଚକୁ ଧୋତି ଓ ଗିଲିକିସ ପଞ୍ଜାବି ପିନ୍ଧିଛି ତ କିଏ ମୋଗଲ ବାଦଶାହଙ୍କ ପରି ଧୋବ ଫର ଫର ଅଚକନ ଉପରେ ସିଲ୍କ ସେରଓ୍ୱାନି ପିନ୍ଧି ମୁଣ୍ଡରେ ଖଦଡ଼ ଟୋପି ପିନ୍ଧିଛି । ଏହିପରି କେତେ ବାବୁ କଟକର ସବୁ ସଭା ସମିତିରେ ଓଜସ୍ୱୀନୀ ଭାଷାରେ ବକ୍ତୃତା କରୁଥିବା, କାଠଯୋଡ଼ି, ମହାନଦୀ, କୂଳରେ ହାଓ୍ୱା ଖାଇବା ପାଇଁ ବୁଲୁଥିବା ବା ସ୍କୁଲ-କଲେଜ ଝିଅଙ୍କ ରିକ୍ସା ପଛରେ ଗୁଣ୍ ଗୁଣ୍ ହୋଇ ଗୀତ ଗାଇ ବୁଲୁଥିବା କଟକି ବାବୁମାନଙ୍କ ଭିତରୁ କେତେଜଣ । ସେମାନଙ୍କ ଭିତରୁ ଜଣେ କହିଲେ "ଅନାମ ଚାଲ, ଆଜିପରା ସ୍ୱାଧୀନତା ଦିବସ—ଆଜି ଏହି ଠାକୁରାଣୀ ମନ୍ଦିରରେ ହରିଜନମାନଙ୍କର ପ୍ରବେଶ । ଆଜିଠାରୁ ତୁମ୍ଭେମାନେ ଆଉ ଅସ୍ପୃଶ୍ୟ ହୋଇ ରହିବ ନାହିଁ" ଇତ୍ୟାଦି । ତା ପରେ ଆଉ ଜଣେ ବାବୁ ଆସି ତାକୁ ଟାଣି ଟାଣି ମନ୍ଦିର ଆଡ଼କୁ ନେଇଗଲେ । ତା ଆଗରେ ପଛରେ ବହୁତ ବାବୁ ଚାଲିଥାଆନ୍ତି—ସେହି ବାବୁମାନେ ଯେଉଁମାନେ କି ଗରିବଙ୍କୁ ଘୃଣା କରନ୍ତି—ସାଇକେଲ ମଟରରେ ଗଲାବେଳେ ରାସ୍ତାରୁ ଟିକିଏ ଆଡ଼େଇ ନ ହେଲେ ବ୍ରୁଟ୍ ବୋଲି କହନ୍ତି; କିନ୍ତୁ ସ୍ୱାଧୀନତା ଦିବସ ଦିନ ହରିଜନ ପଡ଼ାରେ ପଶେଇ କରି ଫଟୋ ଉଠାନ୍ତି ଘରକୁ ଯାଇ ଲୁଗା ବଦଳାନ୍ତି, ବ୍ରାହ୍ମଣ ହୋଇଥିଲେ ନୂଆ ପଇତା ଲଗାନ୍ତି ଆଜି ବି ସେମାନେ ମନ୍ଦିର ପ୍ରବେଶ ପାଇଁରେ ତାଳି ପକାଉଛନ୍ତି । ବହୁ ଫଟୋଗ୍ରାଫର, ଖବରକାଗଜ ପ୍ରତିନିଧି, ମନ୍ତ୍ରୀ, ପୋଲିସ ବେଢ଼ି ରହିଛନ୍ତି ।

ଅନାମର ଭାବନାର କିଛି କହିବାର ଅବସର ନ ଥିଲା, ଟାଣି ଟାଣି ଏକାବେଳେକେ ମନ୍ଦିର ଭିତରେ ନେଇ ହାଜର କରାହେଲା । ତାର ପରି ଆଉ ଦଶବାର ଜଣ ମଳିମୁଣ୍ଡିଆ ହେଉକଲ ମେହେନ୍ତରର ଫୁଲ ମାଳ ପକାଇ ଠିଆ ହୋଇଛନ୍ତି—ବଳି ପଡ଼ିବା ପୂର୍ବରୁ ବୋଦାର ଯେପରି ଫୁଲମାଳ ବେକରେ ପକାଇବା ନ ପକାଇବାର ସ୍ୱାଧୀନତା ନ ଥାଏ, ଏମାନଙ୍କର ମଧ୍ୟ ସେହି ଅବସ୍ଥା । ଅନାମ ଏମାନଙ୍କଠାରୁ ଚେହେରାରେ ଅଲଗା ଅନ୍ୟ ସମସ୍ତେ ଦେଖିବାକୁ ଲୋଭା—ହାଡ଼ ଉପରେ ନିଜ ନିଜର ଚମଡ଼ାଟିକୁ ଯେପରି କୌଣସିମତେ ଟାଣିରଖିବାକୁ ଚେଷ୍ଟା କରୁଛନ୍ତି । ଜେଣେ ଦାନ୍ତଗୁଡ଼ିକୁ ଘୋଡ଼ାଇବାକୁ ଯଥେଷ୍ଟ ଚମ ନାହିଁ । ଡାକ୍ତର-ଖାନାରେ ଥିବା ନରକଙ୍କାଳକୁ ଗୋଟିଏ ଲେଙ୍ଗୁଟିଆ ଏବଂ ପୁରୁଣା ପତଳା ଚମରେ ବାନ୍ଧି ରଖିବାକୁ ଚେଷ୍ଟା କଲେ ଯେପରି ଦେଖାଯାଆନ୍ତି । ବର୍ଷ ବର୍ଷ ଧରି ମନୁଷ୍ୟର ଆଇନ୍‌ସିଦ୍ଧ ସାମାଜିକ ନିର୍ଯ୍ୟାତନା ଦେଖି ଦେଖି ପକ୍ଷୀଛୁଆଙ୍କ ଯେପରି ଘୃଣା ଓ ଦୁଃଖରେ ଭିତରକୁ ଭିତରକୁ ପଶିଯିବାରେ ବସିଛନ୍ତି । ବାସ୍ତବ ଜୀବନ ଅପେକ୍ଷା ମୃତ୍ୟୁର ରହସ୍ୟ ଭେଦ କରିବାରେ ଯେପରି ଏମାନଙ୍କ ଅଦମ୍ୟ ଆଗ୍ରହ । ଅନାମ

କିନ୍ତୁ ଶତ ଦୁଃଖ, ଶତ ନିର୍ଯାତନା ଭିତରେ ରହି ମଧ୍ୟ ତାର ମାଂସଳ ଓ ବଳିଷ୍ଠ ଦେହଟିକୁ ଆଗପରି ରଖିପାରିଛି । ସ୍ୱଭାବତଃ ଦୃଢ ଦେହ—ପିଚ୍‌ରାସ୍ତା ପରି କଳା ଓ ଶକ୍ତ ଗ୍ରାନାଇଟ୍ ମୂର୍ତ୍ତିଏ ଚଉଡ଼ା । ହାତ ଦୁଇଟାର ମାଂସ ପେଶୀ ଲୁହାପରି ଟାଣ—ପିଲାଦିନେ ବହୁ ଦଣ୍ଡବୈଠକ କରି ତା ଦେହଟିକୁ ମୂର୍ତ୍ତି ଗଢ଼ିଲାପରି ଗଢ଼ିଛି । ମୋଟା ମୋଟି ବିଜ୍ଞାପନରେ ବାହାରିଥିବା ଔଷଧ ଖାଇଲା ପରି ମଣିଷର ଛବିପରି ତା ଦେହର ଆକୃତି ।

ସେ ଆସିଲା ପରେ ତାର ଜଣାଶୁଣା ମେହନ୍ତରମାନେ ତା'ପାଖରେ ଆସି ଠିଆହେଲେ । ସମସ୍ତଙ୍କୁ ଏକା ସାଙ୍ଗରେ ଦେଖିଲେ ମନେହୁଏ ଏ ସମସ୍ତେ ଯେପରି ନିଜ ନିଜ ଦେହରୁ ରକ୍ତ ଚପୁଡ଼ି ଅନାମ ଦେହରେ ନେଇ ଠୁଳ କରିଛନ୍ତି—ଦୁର୍ଯୋଧନର ପ୍ରତିଶୋଧ ପାଇଁ ଶକୁନିର ସମସ୍ତ ପରିବାର ଅନାହାରରେ ମରି କେବଳ ଶକୁନିକୁ ବଞ୍ଚାଇ ରଖିଲାପରି ଏ ସମସ୍ତେ ନଖାଇ ନପିଇ ଯେପରି ଅନାମକୁ କେବଳ ଖୁଆଇ ପିଆଇ ରଖିଛନ୍ତି ସେମାନଙ୍କର ଶୋଷଣକାରୀ ସମାଜର ପ୍ରତିଶୋଧ ନେବାପାଇଁ ।

କିଛି ସମୟ ପରେ ଜଣେ କେହି ବିଶିଷ୍ଟ ଲୋକ ଆସିବାରୁ ସମସ୍ତେ ରାସ୍ତା ଛାଡ଼ିଦେଲେ । ଅନାମ ଦେଖିଲା ମନ୍ଦିର ପ୍ରାଙ୍ଗଣରେ ତାର ପୂର୍ବପରିଚିତ ବାବୁ, ଯା ଘରେ ତା ସ୍ତ୍ରୀ କାମକରି ମାସକୁ ଆଠଟଙ୍କା ଦରମା ପାଏ । କୁଞ୍ଚକରା ହୋଇଥିବା ଶାନ୍ତିପୁରକେତନ ଜରିଧୋତି, ଫିନ୍ ଫିନ୍ ସିଲ୍କ ପଞ୍ଜାବି ପିନ୍ଧି ଦେହରେ ପାଟଚଦର ପକାଇ ତା ସ୍ତ୍ରୀର ଖାଉନ୍ଦ ସେଠି ଆସି ପହଞ୍ଚିଲେ । ସେ ଜଣେ ବିଖ୍ୟାତ ପଣ୍ଡିତ ବ୍ରାହ୍ମଣ ଓ ଜନସେବୀ ନେତାମଧ୍ୟ । ଆଗକାଳର ଜଣେ ଧନୀ ଜମିଦାର ଓ ଦେଓ୍ୟାନ ବାହାଦୂର—ଆଧୁନିକ ଯୁଗର ପଦ୍ମବିଭୂଷଣ ଓ ସହରର ସେ ଜଣେ ବିଶିଷ୍ଟ ବ୍ୟବସାୟୀ । ହଜାର ହଜାର ଟଙ୍କା ସାମାଜିକ ଅନୁଷ୍ଠାନ ପାଇଁ ଚାନ୍ଦା ଦେବା କଥା ଖବରକାଗଜରେ ବାହାରେ—ଅବଶ୍ୟ ଅନେକ ଦୁଷ୍ଟ ଲୋକେ ବୋଧହୁଏ ଈର୍ଷା ପରବଶ ହୋଇ କହିଥାନ୍ତି ସେ କଳାପୋଚେଇରେ ଯେତିକି ଟଙ୍କା ହୁଏ ତାର ଏକଷଷ୍ଠାଂଶ ସେ ସମ୍ପତ୍ତି ଦାନ ହିସାବରେ କୁଆଡ଼େ ବାଣ୍ଟି ଦିଅନ୍ତି । କିନ୍ତୁ ସରକାରୀ ଗୋଇନ୍ଦା ବିଭାଗ ଆଜଯାଏଁ କୌଣସି ସତ୍ୟ ପ୍ରମାଣ ପାଇ ନ ଥିବାରୁ ଏ ପ୍ରକାର ଅଭିଯୋଗରେ ବୋଧହୁଏ କୌଣସି ସତ୍ୟତା ନାହିଁ । ମୋଟାମୋଟି ସହରରେ ଉପର ମହଲରେ ତାଙ୍କର ଖୁବ ଖ୍ୟାତି ଏବଂ ପ୍ରତିପତ୍ତି ଅଛି । ତାଙ୍କର ମନ୍ତ୍ରିମଣ୍ଡଳରେ ଯୋଗ ଦେବାର କଥା ବି ବହୁବାର ଶୁଣାଯାଉଛି । ତାଙ୍କର ପୌରୋହିତ୍ୟରେ ଆଜ ମନ୍ଦିରରେ ହରିଜନ ପଶିବାର କଥା । ସେ ହସି ହସି ମନ୍ଦିରରେ ପ୍ରବେଶ କଲେ-- ବହୁ କ୍ୟାମେରା କ୍ଲିଂ କ୍ଲିଂ କରି ଉଠିଲା । ଘଣ୍ଟମର୍ଦ୍ଦଳ ଅଦ୍ଭୁତ ଜୋର୍‌ରେ ବାଜିଲା । ସବୁ ହରିଜନଙ୍କୁ ମେଣ୍ଢାପଲ ପରି ମନ୍ଦିର ଭିତରକୁ

ନଅନ୍ତେଲା । ପ୍ରଧାନ ଅତିଥି ନିଜେ ଫୁଲ ଚନ୍ଦନ ଦେଇ ହରିଜନମାନଙ୍କୁ ସ୍ୱାଗତ କରିବାପାଇଁ ଠିଆ ହୋଇଥାନ୍ତି ଠାକୁରାଣୀଙ୍କ ପାଖରେ । ଠାକୁରାଣୀଙ୍କ ଆଗରେ ବଡ ଥାଳିରେ ଥାଳିଏ ରସଗୋଲା, ଲଡୁ, କଦଳୀ ଥୁଆହୋଇଥାଏ ଭୋଗପାଇଁ ।

ଅନାମ ମନ୍ଦିର ଭିତରେ ପଶିଯାଇ ଠାକୁରାଣୀ ଓ ତାଙ୍କ ଆଗରେ ଠିଆ ହୋଇଥିବା ତା ସ୍ତ୍ରୀ ଗେଲିର ଖାଉଁଦଙ୍କୁ ଦେଖିଲାକ୍ଷଣି ତା ଦେହ ଭିତରେ ଗୋଟାଏ ଶିହରଣ ଆସିଗଲା । ଗେଲିର ସିନ୍ଦୂରଭରା ମୁହଁଟି ତାର ମନେ ପଡ଼ିଗଲା । ସେ କିପରି ଏ ବାବୁଙ୍କ ବାଡ଼ି ଦୁଆରରୁ ଦୁଇଘଣ୍ଟା କାଳ ବସି ବସି ନିରାଶରେ ଫେରି ଆସିଥିଲା ମନେ ପଡ଼ିଗଲା—ନେତର କରୁଣ ଆଖି ଦୁଇଟି ତା ଆଖି ଆଗରେ ଭାସି ଉଠିଲା—ହୁଏତ ତାର ଆଦରର ନେତଟି ଏତେବେଳଯାଏଁ ଆଉ ଜୀବନରେ ନାହିଁ, ଆଉ କିଛି ଭାବି ପାରିଲା ନାହିଁ···ହଠାତ୍ ତା ଆଖି ଠାକୁରାଣୀଙ୍କ ଆଖିରେ ଯାଇ ପଡ଼ିଲା । ଠାକୁରାଣୀଙ୍କର ସୁନା ଆଖି ଦୁଇଟା ଆଲୁଅରେ ଦପ୍ ଦପ୍ ହୋଇ ଜଳି ଉଠିଛି । ହାତରେ ଥିବା ସୁନାଖଣ୍ଡାରୁ ଝିକ୍ ଝିକ୍ ହୋଇ ଅଗ୍ନି କଣା ଛୁଟୁଛି । ସିନ୍ଦୂର ଜର ଜର ଲାଲ କପାଳ ଓ ଲାଲ ଜିଭରୁ ଯେପରି ରକ୍ତଧାର ଝରିପଡ଼ୁଛି—ହିଂସାର ତୀବ୍ର ପଶୁଶକ୍ତି ପଥର ମୂର୍ତ୍ତି ବିଦୀର୍ଣ୍ଣ କରି ମହିଷାସୁରର କରାଳ ଆଖିରୁ ରାକ୍ଷସୀ କ୍ଷୁଧା ଚିତ୍କାର କରି ଉଠୁଛି, ଧୂପର ଗନ୍ଧ ଓ ରକ୍ତ ମନ୍ଦାରର ରକ୍ତିମ ଆଭା ଗୋଟିଏ ଅଦ୍ଭୁତପୂର୍ବ ଉନ୍ମାଦନା ସୃଷ୍ଟି କରୁଛି । କ୍ରମେ ରକ୍ତମାର ଠାକୁରାଣୀ ଓ କୃଷ୍ଣ ମହିଷାସୁରର ସାରା ଦେହରୁ ଅଗ୍ନି କଣା ବାହାରି ଅନାମର କଳା ମୁଲୁକ ପଥର ପରି ଦେହର ପ୍ରତ୍ୟେକ ଲୋମକୂପ ଭିତର ଦେଇ ତାର ଦେହଟାକୁ ପୋଡ଼ି ପକାଇଲା । ରକ୍ତ ଲାଲ ଟହ ଟହ ତରଳ ଲହୁପରି ଶିରାପ୍ରଶିରା ଦେଇ ଛୁଟିବାକୁ ଲାଗିଲା । ଠାକୁରାଣୀ, ମହିଷାସୁର ଓ ତାର ଦେହ ଭିତରେ ଆଉ କିଛି ତଫାତ ରହିଲା ନାହିଁ । ହିଂସାର ପ୍ରଚଣ୍ଡ ଦାବାନଳ ହୁରୁଅନ୍ତେ ଜଳି ଉଠିଲା—କ୍ରମେ କ୍ରମେ ଅନାମ ଦେଖିଲା ପୃଥିବୀ ସାରା ଅଗ୍ନିର ପ୍ରଖର ଶିଖା ଘୋଟିଗଲା ସେହି ଲାଲ ଶିଖା ଭିତରୁ ହଠାତ୍ ମୁଖ୍ୟ ଅତିଥି ଚନ୍ଦନ ଧରି ଅନାମ ଆଗରେ ଠିଆହେଲେ । ଅନାମ ଦେଖି ପାରିଲା ସେହି ଲାଲ ଆଲୋକ ଭିତରେ ଗେଲିର ଖାଉନ୍ଦ ଚନ୍ଦନ ଦେବା ବାହାନାରେ ତାର ନେତର ବେକକୁ ମୋଡ଼ୁଛନ୍ତି —ନେତ ଚିତ୍କାର କରି ଉଠୁଛି— ଗେଲି ଦଉଡ଼ୁଛି—ତାର ବେକକୁ ମଧ୍ୟ ସେ ମୋଡ଼ୁଛନ୍ତି । ସେମାନଙ୍କର ରକ୍ତ ଝର ଝର ହୋଇ ଠାକୁରାଣୀଙ୍କ ଜିଭରେ ଆସିପଡ଼ୁଛି —ବାବୁମାନେ ହସୁଛନ୍ତି । ଲାଲ ଶିଖା ଆହୁରି ବେଶୀ ରକ୍ତ ରଞ୍ଜିତ ହୋଇ ଉଠିଲା । ଶକ୍ତିରୂପିଣୀ ଠାକୁରାଣୀଙ୍କର ଅସୀମ ଶକ୍ତିରେ ବଳୀୟାନ ଅନାମ ହାତର ଉଦ୍ଧତ ମାଂସପେଶୀ ଗେଲିର ଖାଉନ୍ଦଙ୍କର ଗଳା ଚିପି ଧରିଲା । ସେ ଗାଁ ଗାଁ ଶବ୍ଦ କରି ଉଠିଲେ । ଗେଲି ହସି ଉଠିଲା । ନେତ ଉଠି ବସିଲା—ଗନ୍ଧଅ

ମାଳ ହସି ଉଠିଲେ । ତା ପାଖରେ ଠିଆ ହୋଇଥିବା ଅସ୍ଥିକଂକାଳ ସବୁ ହସି ଉଠେଲେ । ଖାନନଗରର ସବୁ ଭୋକିଲ ପ୍ରେତ ତାଳି ମାରି ନାଚିଲେ—ଅନାମ ଶୁଣିଲା ଚାରିଆଡ଼େ ଖାଲି ହସ, ଆନନ୍ଦର ହସ, ତୃପ୍ତିର ହସ, ମୁକ୍ତିର ହସ, ଠାକୁରାଣୀଙ୍କର ହସ, ମହିଷାସୁରର ହସ । ଅନାମ ଆକାଶ କମ୍ପାଇ ହସିଲା—ସେ ହସରେ କଂଟ୍ରାକ୍ଟର ବାବୁମାନେ, ଫଟୋଗ୍ରାଫର୍, ଖବରକାଗଜ ରିପୋର୍ଟରମାନେ ଘଣ୍ଟ କରତାଳ ବଜାଳିମାନେ, ମନ୍ତ୍ରୀ ଓ ପୁଲିସମାନେ, ସମସ୍ତେ କୁଆଡ଼େ ମିଳାଇ ଗଲେ ଶତାବ୍ଦୀର କଳଙ୍କିତ ଦୁଃସ୍ୱପ୍ନ ପରି···।

ବହୁ ସମୟ ପରେ ଅନାମର ହସ କମିଆସିଲା । ଲାଲ ଆଲୋକ କ୍ରମେ ମଳିନ ହୋଇ ଆସିଲା । ଜୀବନର ନୂତନ ପ୍ରଭାତର ସ୍ନିଗ୍ଧ ନୀଳିମା ଆଗରେ ନୂତନ ଦୁନିଆର ପରଦା ଟାଣି ଆଣିଲା—ଶିବଙ୍କର ପ୍ରଳୟଙ୍କରୀ ତାଣ୍ଡବ ନୃତ୍ୟ ପରେ ପାର୍ବତୀଙ୍କର କୋମଳ ସ୍ପର୍ଶ ପରି ନୂତନ ଆଲୋକ ଓ ମୁକ୍ତ ବାୟୁର ସ୍ନିଗ୍ଧ ଶୀତଳ ସ୍ପର୍ଶରେ ତାର ମାଂସପେଶୀ ନରମ ହୋଇ ଆସିଲା—ନରକପୁରୀର ହିଂସ୍ର ଦାନବ ପୃଥିବୀର ମଣିଷରେ ପରିଣତ ହେଲା । ସେ ଆସ୍ତେ ଆସ୍ତେ ଆଖି ମେଲାଇ ନୂତନ ଦୁନିଆକୁ ଚାହିଁ ଦେଖିଲା—ଆଗରେ ମୋଟା ମୋଟା ଲୁହା ରେଲିଂ—କଠିନ ଇସ୍ପାତର ବାଡ଼— ଆଖି ବୁଜି ହୋଇ ଆସିଲା । ପୁଣି ଦେଖିଲା, ନୂତନ ଆଲୋକରେ ଉଦ୍ଭାସିତ ସାରା ଜନଜଗତ ତା ସହିତ ଲାଗି ଲାଗି ଠିଆ ହୋଇଛନ୍ତି । ଲୁହା ବାଡ଼ର ଆରପାଖେ ଜେଲର ଖାଉନ୍ଦ ଓ ଡାକ୍ତର କେତେକଙ୍କ ହାତରେ ମୋଟା ମୋଟା ଲୁହା ବେଡ଼ି—ଅନାମ ପୁଣି ହସି ଉଠିଲା "ଜେଲ ନେତା, ଗଞ୍ଜିଆ ମାଳି ସମସ୍ତେ ଆସ ଆମ ଘରର ସମସ୍ତେ ଆସ, ଆଜି ଆଉ ଆମର ଭୟ ନାହିଁ । ଆମେ ସମସ୍ତେ ମୁକ୍ତ - ଶତ ଶତାବ୍ଦୀର ସମସ୍ତ ଶୋଷଣକାରୀ ଆଜି ବନ୍ଦୀ ଦେଖ, ସେମାନେ ସମସ୍ତେ ବନ୍ଦୀ ।"



# ଶେଷ ବସନ୍ତର ଚିଠି

● ମନୋଜ ଦାସ

ଗ୍ରେଟ ସହରଟିର ଅପେକ୍ଷାକୃତ ଜନବିରଳ ପଶ୍ଚିମପ୍ରାନ୍ତରେ କେତେଗୋଟି ଆଧୁନିକ ଧରଣର ଘର—ଆକାଶ ରଙ୍ଗର, ବିସ୍କୁଟ ରଙ୍ଗର, ଅଥବା ସବୁଜ ଅଙ୍ଗୁର ଭଳି ଟହ ଟହ ସ୍ୱଚ୍ଛ ଓ ଲୋଭନୀୟ ।

ଏଇ କଲୋନିର ଶେଷ ପ୍ରାନ୍ତରେ ଯେଉଁ ଦୁଇ ମହଲା ଘରଟି ସଯତ୍ନ ବର୍ଦ୍ଧିତ ଫଳପୁଷ୍ପର ଗଛଲତା ଗହନରୁ ସେଇଟି ଦୂରକୁ ଦେଖାଯାଏ ଗୋଟାଏ ନୀଡ଼ ଭଳି ।

ନୀଡ଼ ଭିତରୁ ଯିମିତି ବିହଙ୍ଗ ଶାବକଟିଏ ଆଖି ଖୋଲି ଅନାଏ, ଠିକ୍ ସିମିତି ଦ୍ୱିତଳର ବାରନ୍ଦାର କେତୋଟି ପତ୍ରପୁଷ୍ପୋଚ୍ଛଳ ଟବ୍ ଭିତରୁ ଟିକି ଝିଅଟିଏ ରେଲିଂ ଉପରେ ଭର ଦେଇ ଅନାଇ ରହୁଥାଏ ରାଜପଥର ଦୃଶ୍ୟମାନ ସୀମା ପର୍ଯ୍ୟନ୍ତ ।

ସେ ପଥରେ ଦୈନିକ ଯାଏ କେତେ ଯାନବାହାନ, କେତେ ଜନସମର । ଟିକି ଝିଅଟିର ନିର୍ନିମେଷ ଦୃଷ୍ଟିକୁ ନିମିଷକେ ପାଇଁ ମଧ୍ୟ ସେମାନଙ୍କର ତୈଳାକ୍ତ ଗତିଶୀଳ ଦୃଶ୍ୟ ଚମକାଇ ଦେଇପାରେ ନାହିଁ । ସେ ପଥରେ ଯାଏ ଜନ୍ମ ପିଟି ପିଟି, ସୁଲଳିତ ବଂଶୀ ବଜାଇ, ସିନେମାର ମନ୍ଥର ବିଜ୍ଞାପନ ଗାଡ଼ି । ଦୈନିକ ସାଢ଼େ ଦଶଟାରେ ଦୁଇଟି ସାଇକେଲରେ ଲଗାଲଗି ହୋଇ କୌଣସି ଅଫିସ ଉଦ୍ଦେଶ୍ୟରେ ଯୁବକଟିଏ ଓ ଯୁବତୀଟିଏ ଯାଉ ଯାଉ ଏପରି ଆଚରଣ କରୁଥାନ୍ତି ଯେ, ସେଥିରେ ତଳେ ଫାଟକ ଆଗରେ ଟୁଲ ପକାଇ ବସି ଜଣ ଆଉସା ଆଉସି କରି ମହାକାଳ ଅଚେତନ ଭଳି ଢୁଳୁଥିବା ଦରୁଆନ୍ଟି କୃତ୍ରିମ ଭାବରେ କାଶି ଉଠେ, କଦାଚିତ ଫେରିବାଲା କଣୋରଟିଏ ହୁଇସିଲ ମାରି ଦିଏ । ସେ ପଥରେ ପୁଣି ଜଣେ ଜଟାଜୁଟଧାରୀ, ବିଭୂତି-ବିମଣ୍ଡିତ ନିରାସକ୍ତ ପୁରୁଷ ବଶୀକରଣ, ଗ୍ରହଶାନ୍ତି ପ୍ରଭୃତିର ସ୍ୱପ୍ନଲବ୍ଧ ଅବ୍ୟର୍ଥ କବଚ; ଚେରମୂଳ ଇତ୍ୟାଦି ଧରି ବିଦଗ୍ଧ ମାନବତାର ସେବାର୍ଥେ ପ୍ରାୟଶଃ ଯିବାଆସିବା କରନ୍ତି । ଟିକି ଝିଅଟିର ସୁଦୂରପ୍ରସାରୀ ଦୃଷ୍ଟି କିନ୍ତୁ କେଉଁଥିରେ ହେଲେ ବି ଚହଲି ଯାଏ ନାହିଁ ।

ପଥରେ ବିପରୀତ ଦିଗରେ, ଅଦୂରର ଯେଉଁ କ୍ଷୁଦ୍ର ହୋଟେଲରେ ଦୁଇ ମହଲାରେ ଏକମାତ୍ର କୋଠରିଟି ଭଡ଼ା ନେଇ ମୁଁ ରହୁଥାଏ, ସେଠାରୁ ସେଇ ଟିକି ଝିଅଟିକୁ ଦୀର୍ଘ ସମୟ ଧରି ଅବଲୋକନ କରିବାଟା ମୋର ନିଃସଙ୍ଗ ଜୀବନର ଏକ ଦୁର୍ବାର ଅଭ୍ୟାସରେ ପରିଣତ ହୋଇଯାଇଥିଲା । ସରକାରୀ କଲେଜରୁ ଅବସର ଗ୍ରହଣ କରିବାପରେ ହିଁ ମୁଁ ସେଠାକୁ ସମ୍ପ୍ରତି ଏକ ପ୍ରାଇଭେଟ ସାନ୍ଧ୍ୟ କଲେଜର ଇଂରାଜୀ ଅଧ୍ୟାପକ ରୂପେ ନିଯୁକ୍ତି ପାଇ ଆସିଥିଲି । ଲ୍ୟାଙ୍ଗଲ୍ୟାଣ୍ଡରୁ ଏଲିଅଟ୍ ପର୍ଯ୍ୟନ୍ତ ବହୁ ପ୍ରସ୍ତୁତି ଜୀବନବ୍ୟାପୀ କରିଛି । ଅତଏବ ମଧ୍ୟେ ମଧ୍ୟେ ପିଲାଙ୍କର ଝାଡ଼ା

ସଂଶୋଧନ କରିବା ଛଡ଼ା ଏଣିକି ପଢ଼ାପଢ଼ି କରିବାର ବା ଆଉ କିଛି କରିବାର ପ୍ରବୃତ୍ତି ନ ଥିଲା ।

ଦିବସବ୍ୟାପୀ ଅନେକ ଅଳସ ମୁହୂର୍ତ୍ତ ଧରି ମୁଁ ମୋ କୋଠରୀର ବାତାୟନ ଭିତରୁ ଝିଅଟିକୁ ଅନାଇ ରହୁଥିଲି । ମଝେ ମଝେ ପରିବାରର ପରିଚାରିକା ଭଳି ବୋଧ ହେଉଥିବା ଜଣେ ମହିଳା ଆସି ତାକୁ ସସ୍ନେହରେ ଭିତରକୁ ଡାକି ନେଉଥିଲେ । କିନ୍ତୁ ସକାଳ ପ୍ରାୟ ଆଠଟା ପରେ ଓ ଅପରାହ୍ଣ ତିନିଟା ପରେ ଝିଅଟି ପ୍ରତିଥର ଦୁଇ ତିନି ଘଣ୍ଟା ଲେଖାଏଁ ସେଇଠି ଯେପରି ନିଶ୍ଚଳ ହୋଇ ରହିବ, ସେଥିପାଇଁ କିଏ ଯେପରି ତାକୁ ମନ୍ତ୍ରମୋହିତ କରି ଦେଇଥିଲା । ଥରେ ଥରେ ତାର ସେଇ ଏକାନ୍ତ କମନୀୟ ବଦନକୁ ଟିକିଏ ଅଧିକ ନିରୀକ୍ଷଣ କରି ଦେଖିବା ସକାଶେ ମୋର ଇଚ୍ଛା ପ୍ରବଳ ହେଲେ ମୁଁ ମୋର କୋଠା ସମ୍ମୁଖର କ୍ଷୁଦ୍ର ବାରଣ୍ଡାକୁ ବାହାରି ଯାଉଥିଲି । ଝିଅଟି ମୋ ଆଡ଼କୁ ମଝେ ମଝେ ଅନାଉ-ଥାଏ । ଦୂରତ୍ୱ ତଥା ମୋର ବାର୍ଦ୍ଧକ୍ୟ ପୀଡ଼ିତ ଦୃଷ୍ଟିରୁ ମଳିନତା ସତ୍ତ୍ୱେ ମୁଁ ଦେଖୁଥିଲି ବରଂ ବୁଝାଯାଇପାରେ ଯେ ଅନୁଭବ କରୁଥିଲି, ଝିଅଟିର ନୟନଯୁଗଳ ବଡ଼ ଉଦାସ । ତଥାପି ସେହି ଔଦାସ୍ୟ ତଳେ ଲୁଚି ହୋଇ ରହିଥିଲା ଯେଉଁ ସ୍ଫୁର୍ତ୍ତିର ସ୍ଫୁଲିଙ୍ଗ, ତାହା ଥରେ ଥରେ ସାମିଧ ତା'ର ପରିପାର୍ଶ୍ୱକୁ ଝଲସାଇ ଦେଉଥିଲା—ଥରେ ଥରେ, ଯେତେବେଳେ ଶ୍ରେଷ୍ଠ ପକ୍ଷୀଟିଏ ଫୁଲକୁଣ୍ଡ ସବୁ ଭିତର ଦେଇ ଡେଇଁ ଡେଇଁ ତା' ସମ୍ମୁଖକୁ ଚାଲିଆସୁଥିଲା, ଅଥବା ଯେତେବେଳେ ପାର୍ଶ୍ୱବର୍ତ୍ତୀ ଘରର ପାଳିତ ପାଠମାଙ୍କଡ଼ଟି ଜଞ୍ଜିରରୁ କୌଣସି ପ୍ରକାରେ ମୁକୁଳି ଆସି ସେଇ ବାରଣ୍ଡାରେ ବସୁଥିଲା ଓ ସେ ରୂପ ଦର୍ଶନେ ଶଙ୍ଖୀ ବାଲେଇଟିଏ କ୍ରମାଗତ ସ୍ୱରରେ ଫୁଲିବାକୁ ଲାଗୁଥିଲା ।

କିନ୍ତୁ ସେ ସ୍ଫୁଲିଙ୍ଗର ସ୍ଫୁରଣ ହେଉଥିଲା ମୁହୂର୍ତ୍ତିକ ସକାଶେ । ମୁଁ ଯେତେ ଆଗ୍ରହରେ ଝିଅଟିର ଆଚରଣରେ ଏଭଳି ବିରଳ ବ୍ୟତିକ୍ରମକୁ ଅପେକ୍ଷା କରୁଥାଏ ନା କାହିଁକି, ମୋ ଉପରେ ଆଖି ପଡ଼ିଲେ ସେ ପୁଣି ତାର ବିଷର୍ଣ୍ଣ ଏକାଗ୍ରତା ଭିତରେ ନିମଜ୍ଜିତ ହୋଇଯାଏ, ଲେଉଟିଯାଏ ଏକ ସୁଦୂର ପୃଥିବୀକୁ ଯା'ର ଏକମାତ୍ର ବାସିନ୍ଦା ସେ ନିଜେ । ଛାତ୍ର ଅବସ୍ଥାରେ, ତଥା ଅଧ୍ୟାପକ-ଜୀବନର ପ୍ରଥମ ପର୍ଯ୍ୟାୟରେ ମୁଁ ବରଂ ବିଭିନ୍ନ ସୌଖୀନ ଅଭିନୟ ଅନୁଷ୍ଠାନର ସର୍ବଦା ହାସ୍ୟରସାତ୍ମକ ଭୂମିକାରେ ଅବତୀର୍ଣ୍ଣ ହେଉଥିଲି । ଅନ୍ୟ ଭିତରେ ମଜାର ଉଦ୍ରେକ କରିବାଟା ଥିଲା ଦୁର୍ଭାଗ୍ୟ ବା ସୌଭାଗ୍ୟକ୍ରମେ ମୋ ଚେହେରାର ଜନ୍ମଗତ ବିଶେଷତ୍ୱ । ଅଥଚ ଝିଅଟି ମୋତେ ଦେଖି କପଟ ପାଠମାଙ୍କଡ ସାନ୍ନିଧ୍ୟରୁ ଲାଭ କରିଥିବା ପ୍ରସନ୍ନତା ଟିକିକ ହରାଇ ବସିପାରେ, ତାହା ମୋତେ କେବଳ ବିସ୍ମିତ ନୁହେଁ, ହତାଶ ମଧ୍ୟ କରୁଥିଲା । ଭାବୁଥିଲି, ବାର୍ଦ୍ଧକ୍ୟ ବୋଧହୁଏ ମୋ ଚେହେରାରେ ଆଣିଦେଇଛି ଅନାହୂତ ଗାମ୍ଭୀର୍ଯ୍ୟ ।

ଦିନ ସାଢ଼େ ଦଶରୁ ଏଗାରଟା ଭିତରେ ସାଇକେଲ ଚଢ଼ି, ଖାକି ପରିଚ୍ଛଦରେ ରାଜପଥର ବଙ୍କିମ ସୀମାରେ ଯେଉଁ ବ୍ୟକ୍ତି ଆବିର୍ଭୂତ ହୁଏ, ତାକୁ ହିଁ ଦୁଇ ତିନି ଘଣ୍ଟା ଧରି ଝିଅଟି ଅପେକ୍ଷା କରିଥାଏ । ପୋଷ୍ଟମ୍ୟାନଟି ବିଭିନ୍ନ ଘର ଆଗରେ ଦ୍ୱିଚକ୍ରରୁ ଅବତରଣ କରି ଚିଠି ବଣ୍ଟାବଣ୍ଟି କରି ଯେତେବେଳେ ସେଇ ଦୁଇ ମହଲା ପାଖକୁ ଆସେ, ସେତେବେଳେ ଝିଅଟି ପ୍ରାୟ ଶ୍ୱାସରୁଦ୍ଧ ଉତ୍କଣ୍ଠା ନେଇ ବାରଣ୍ଡାରେ ଲମ୍ବି, ବାଡ଼ ଉପରୁ ଝୁଲିପଡ଼ି ପ୍ରଶ୍ନ କରେ, 'ମୋ ପାଇଁ ଚିଠି ଅଛି ? ମୋ ନାମ ରୀନା !' ପୋଷ୍ଟମ୍ୟାନ୍‌ଟି ଈଷତ୍ ନାସ୍ତିସୂଚକ ହାତ ହଲାଇ ଚାଲିଯାଏ । ତା' ପରେ ଏକ ଲମ୍ବା ଦୀର୍ଘନିଃଶ୍ୱାସ ଛାଡ଼ି ଝିଅଟି ତା'ର ଗତିପଥକୁ କେଇ ମୁହୂର୍ତ୍ତ ଅନାଇ ରହି ଘର ଭିତରକୁ ଧୀରେ ଧୀରେ ଅପସରି ଯାଏ । ସେ ଦୃଶ୍ୟ ମୋତେ ବି କିମିତି ଉଦାସ କରିଦିଏ, ଯଦିଓ ଝିଅଟି କାହାଠୁଁ ଚିଠିର ଅପେକ୍ଷା କରି ରହିଛି, ସେ ବିଷୟରେ ମୁଁ କିଛି ହିଁ ଜାଣେନା । ସେ ଭିତରକୁ ଚାଲିଯିବାକୁ ଉଦ୍ୟତ ହେଲେ ମୁଁ ବି ମୋ କୋଠରୀ ଭିତରକୁ ଚାଲି ଆସୁଥିଲି ।

ଉତ୍କଣ୍ଠିତ ପ୍ରତୀକ୍ଷା ଓ ଅବଶେଷରେ ହତାଶ ଦୀର୍ଘନିଃଶ୍ୱାସରେ ଏଇ ଏକା ହିଁ ଦୃଶ୍ୟ ପୁନରାୟ ଅପରାହ୍ଣରେ ଦେଖିବାକୁ ପଡ଼ୁଥିଲା । ପ୍ରାୟ ତିନିଟା ବେଳଠୁ ଝିଅଟି ଆସି ଛିଡ଼ାହୋଇ ରହୁଥିଲା—ସାଢ଼େ ଚାରିଟା ବେଳକୁ ପୋଷ୍ଟମ୍ୟାନ୍ ସେ ଅଞ୍ଚଳ ପରିକ୍ରମା ଶେଷ କରି ଚାଲିଯିବା ପରେ ଘର ଭିତରକୁ ପଶିଯାଉଥିଲା, ଆଉ ମୁଁ ବି ଚାଲିଆସୁଥିଲି । ହଁ ବାରଣ୍ଡାରେ ଦୀର୍ଘ ସମୟ ଛିଡ଼ା ହୋଇ ରାଜପଥକୁ ଅନାଇବା ମୋର ବି କ୍ରମେ ଏକ ନିୟମିତ ଅଭ୍ୟାସରେ ପରିଣତ ହୋଇଯାଇଥିଲା । କହିବା ବାହୁଲ୍ୟ, ଚିଠି ପାଇଁ ମୋର ଅପେକ୍ଷା ନ ଥିଲା । ସେ ସବୁ ଆସୁଥିଲା କଲେଜ ଠିକଣାରେ । ଏଇ ଅଭ୍ୟାସ ପଛରେ ରହିଥିଲା ଝିଅଟିକୁ ବାରମ୍ବାର ଦେଖିବାର ସୁପ୍ତ ଆକାଙ୍କ୍ଷା । ଝିଅଟି ମଧ୍ୟ କ୍ରମେ ଅଧିକରୁ ଅଧିକ ସମୟ ମୋ ଆଡ଼କୁ ଅନାଇ ରହିବାରେ ଅଭ୍ୟସ୍ତ ହୋଇ ପଡ଼ିଥିଲା । ଥରେ ଥରେ ମୋର ମନେ ହେଉଥିଲା, କିମିତି ସେ ମୋତେ କିଛି ପଚାରିବାକୁ ଚାହେଁ, ଅଥଚ ତା'ର ସହଜାତ ସମ୍ଭ୍ରମ-ବୋଧ ତାକୁ ବାଧା ଦେଉଛି । ସେ ଯାହାହେଉ, କ୍ରମେ ବୟସ ଓ ଅପରିଚୟର ସମସ୍ତ ବ୍ୟବଧାନ ସତ୍ତ୍ୱେ ଆମେ ଦୁହେଁ ପରସ୍ପର ଘନିଷ୍ଠ ହୋଇ ଉଠିଥିଲୁ ବୋଲି ମୋର ହୃଦ୍‌ବୋଧ ହେଉଥିଲା । ଆମ ଭିତରେ କିମିତି ଗଢ଼ି ଉଠୁଥିଲା ଏକ ନିର୍ବାକ ମମତା ଓ ସହାନୁଭୂତିର ବନ୍ଧନ ।

ବେଶ୍ କିଛି ଦିନ ଏହିପରି ଗଡ଼ି ଚାଲିଯିବା ଭିତରୁ ଦିନକର ନିସ୍ତବ୍ଧ ଅପରାହ୍ଣରେ ମୋର କୋଠରୀର ଦ୍ୱାର ସେ ପଟେ ଜଣେ କେହି ମୃଦୁ ସଙ୍କେତ ଦେବାରୁ ମୁଁ କବାଟ ଖୋଲି ଦେଇ ଦେଖେ ତ ସେହି ସମ୍ମୁଖସ୍ଥ ଦ୍ୱିତଳ ହର୍ମ୍ୟର ଅଧିବାସୀ ଦରୁଆନ୍‌ଟି ସସଙ୍କୋଚେ ଦଣ୍ଡାୟମାନ । ତା' ମୁହଁରେ ସପ୍ରତିଭ

ପ୍ରୀତ ହସ ଦେଖି ମୁଁ ଅନୁଭବ କଲି କେଳେଣ୍ଡରର ଧ୍ୱଂସ-ଦର୍ଶନ ଜଣ ହୁଏତ ହି ତାର ସମ୍ଭାବ୍ୟ ଚରମ ନୁହେଁ । ମୁଁ ତାକୁ ଭିତରକୁ ଡାକନେଲି । ସେ ମୋ ହାତକୁ ଖଣ୍ଡିଏ ଲଫାପା ବଢ଼ାଇଦେଲେ । ତହିଁ ଉପରେ ଠିକଣା ଲେଖାଥିଲା, "ସ୍ୱପ୍ନା' କେଅର୍ ଅଫ୍..." ଇତ୍ୟାଦ । ମୁଁ ଜିଜ୍ଞାସୁ ନୟନରେ ଧଉଳିଆଳଆତ୍ମକୁ ଅନାଇଲେ ସୁଦ୍ଧା ନୀରବ ପ୍ରୀତହସ ବ୍ୟତୀତ ରେକେ ଆଉ କିଛି ସାହାଯ୍ୟ ତାହାଠାରୁ ଅପାତତଃ ପାଇଲି ନାହିଁ । ଲଫାପାଟିଏ ଖୋଲି ଥିଲି । ତହିଁ ମଧ୍ୟରୁ ନୀଳରଙ୍ଗର କାଗଜଟି ବାହାର କରି ଅଗତ୍ୟା ପଢ଼ିବାକୁ ଲାଗିଲି ।

ଗ୍ରେଟ ଚିଠିଟିଏ ଲେଖାହୋଇଛି ଦୂରାନ୍ତର ଏକ ହସପିଟାଲରୁ । ବୁଝିଲି ସ୍ୱପ୍ନା ନିକଟକୁ ପ୍ରବାସରୁ ତା'ର ଜନନୀ ଲେଖିଛନ୍ତି ।

"ସ୍ୱପ୍ନା,

ତୁ ଯଦି ମୋର ଏ ଚିଠି ଖଣ୍ଡିକ ପଢ଼ିପାରୁ ତେବେ ମୋର ଅକ୍ଷର ଲେଖି ଜାଣିବା ସାର୍ଥକ ହେବ ବୋଲି ଜାଣିବି । ତୁ ମୋ ପାଇଁ କେତେ ମନ ଖରାପ କରୁଥିବୁ । ଏଠାରେ ମୋତେ ଆଉ ବେଶି ଦିନ ରହିବାକୁ ପଡ଼ିବ ନାହିଁ ବୋଲି ଡାକ୍ତରମାନେ କହୁଛନ୍ତି । ତେବେ ଯେତିକି ଦିନ ରହିବି, ତୁ ସୁନା ପିଲାଟି, ମୋତେ ମୋଟେ ଝୁରିହେବୁ ନାହିଁ ।

ତୁ ଫୁଲ ତୋଳିବାକୁ କେତେ ଭଲ ପାଉ । ତୁ ଫୁଲକୁ ଭଲପାଉ ବୋଲି ମୁଁ ଫୁଲକୁ ଭଲ ପାଉଥିଲି । ଏଠାରେ ମୋ ଶେଯ କଡ଼ର ଝରକା ସେପଟେ ସୁନ୍ଦର ବଗିଚାଟିଏ ଅଛି । ଆଜି ବଗିଚାଟି ଖୁବ ଭଲ ଦେଖାଯାଉଛି । ବୋଧହୁଏ ବସନ୍ତ-ଋତୁ ଆସିଗଲାଣି । ଆମ ବଗିଚାରେ କେତେ ଫୁଲ ଫୁଟିଥିବ । ତୁ ଏଥର ଆସ୍ତା ସହିତ ଫୁଲ ତୋଳିବୁ । ଆଗାମୀ ବସନ୍ତ ବେଳକୁ ପୁଣି ମୁଁ କାଖରେ ଧରି ତୋତେ ଚଗିଚାସାକ ବୁଲାଇବି । ଉଚ୍ଚ ଡାଳମାନଙ୍କରୁ ହାତ ବଢ଼ାଇ ତୁ ଫୁଲ ତୋଳିବୁ ।

ମୁଁ ସବୁବେଳେ ତୋ କଥା ଭାବୁଛି । ତୋର ଯେଉଁ କେତେଖଣ୍ଡ ଫୋଟୋ ମୋ ନିକଟରେ ଥିଲା, ସେଗୁଡ଼ିକ ତ ସବୁବେଳେ ଦେଖୁଛି । କିନ୍ତୁ ତୋ ବାପା ଲେଖିଥିଲେ, ତୁ କୁଆଡ଼େ ଅଭିମାନରେ ଆଉ ଫୋଟୋ ଉଠାଇବାକୁ ଦେଉନାହୁଁ ! ସୁନା ପିଲାଟି, ତୋର ଆଉ କେତେଖଣ୍ଡ ନୂଆ ଫୋଟୋ ଯିମିତି ମୁଁ ଅତି ଶୀଘ୍ର ପାଏ । ବଦଳରେ ମୁଁ ତୋ ପାଖକୁ ପ୍ରତି ସାତଦିନରେ ଖଣ୍ଡିଏ ଖଣ୍ଡିଏ ଚିଠି ଲେଖୁଥିବି । ଅଭିମାନ କରିବୁ ନାହିଁ...।"

ଚିଠିଟିର ତାରିଖରୁ ବୁଝିଲି, ତାହା ପ୍ରାୟ ଛଅମାସ ତଳେ ଲେଖା ହୋଇଛି । ପ୍ରତିଶ୍ରୁତି ଅନୁସାରେ ସେ ଚିଠିର ପରବର୍ତ୍ତୀ ଏଗାର ଖଣ୍ଡି ଚିଠିରୁ ଖଣ୍ଡିଏ ମଧ୍ୟ ଯେ ସ୍ୱପ୍ନାର ହସ୍ତଗତ ହୋଇନାହିଁ, ତାହାର ସାକ୍ଷୀ ମୁଁ ସ୍ୱୟଂ ।

ପଚ୍ଚିଶୀର ଦରୁଆନ ମୁହଁକୁ ଅନାଇଲି । ସେହି ଦାନବ ଜାତୀୟ ମଣିଷଟିର ଆଖି ସେତେବେଳେ ଅଶ୍ରୁ ସଜଳ । ମୋର ବୁଝିବାକୁ ଅସୁବିଧା ହେଲା ନାହିଁ । ଷ୍ଟିନା ତା'ର ଜନନୀଠାରୁ ଆଉ କେବେ ବି ଚିଠି ପାଇବ ନାହିଁ । ଡାକ୍ତରମାନେ ଠିକ୍ କହୁଥିଲେ । ଷ୍ଟିନାର ଜନନୀଙ୍କୁ ଦେଖିବାର ସେ ଆବେଗ ନକେତନରେ ରହିବାକୁ ପଡ଼ି ନ ଥିଲା । ଷ୍ଟିନାର ପିତା ବିଭବଶାଳୀ ବ୍ୟବସାୟୀ । କିନ୍ତୁ ଅର୍ଥଲବ୍ଧ ସମସ୍ତ ଆୟୋଜନ ଚିଠିପାଇଁ ଷ୍ଟିନାର ବ୍ୟାକୁଳ ପ୍ରତୀକ୍ଷାକୁ ପ୍ରତିହତ କରିପାରେ ନାହିଁ ।

ସବୁ ବୁଝିଲି, କିନ୍ତୁ ବୁଝିପାରିଲି ନାହିଁ ମୋ ପାଖକୁ ବା କାହିଁକି ସେ ଦରୁଆନ୍ଟି ଚିଠି ଖଣ୍ଡିକ ନେଇ ଆସିଛି, କିଏ ପଠାଇଛି । ପ୍ରକୃତିସ୍ଥ ହୋଇ ଦରୁଆନ୍ ମୋତେ ବୁଝାଇଦେଲା ; ଷ୍ଟିନା ସବୁଦିନେ ମୋତେ ମୋ ବସାର ବାରଣ୍ଡାରେ ତାହାର ଭଳି ପ୍ରତୀକ୍ଷାରତ ଥିବାର ଦେଖେ ଏବଂ ଏ କଥା ମଧ୍ୟ ଦେଖେ ଯେ, ମୋ ମା ପାଖରୁ ମୋ ନିକଟକୁ କେବେ ଚିଠି ଆସେ ନାହିଁ । ସେ ମୋ ପାଇଁ ବଡ଼ ଦୁଃଖ ପାଏ । କିନ୍ତୁ କଣ ବା କରିବ ? ଶେଷକୁ ତା ମା ପାଖରୁ ପାଇଥିବା ଏକମାତ୍ର ଚିଠିଟି ସେ ମୋତେ ଦେଇଦେବା ନିମନ୍ତେ ସ୍ଥିର କରିଥିଲା ।

ଅର୍ଦ୍ଧ ଶତାବ୍ଦୀ ତଳେ ମୁଁ ମୋର ମାଆକୁ ହରାଇଥିଲି । ବୟସ ଓ ଅଭିଜ୍ଞତାର ପାଷାଣସ୍ତୂପ ତଳରେ ପୋତିହୋଇ ପଡ଼ିଥିବା ସେହି ବେଦନା ତଥା କୈଶୋର କାଳର କଳ୍ପନାରେ, ସ୍ୱପ୍ନରେ ତାଙ୍କୁ ଫେରିପାଇବାର କେତେ କେତେ ବିଗତ କ୍ଷଣିକ ପୁଲକ—ସେ ସବୁର ସମନ୍ୱୟ ପ୍ରସୂତ ଏକ ଶିହରଣ ବିଦ୍ୟୁତ୍ ଭଳି ମୋ ଭିତରେ ଚମକି ଗଲା ।

ଅଜ୍ଞାତସାରରେ ଚିତ୍କାର କରିଉଠିଲି, "ଷ୍ଟିନା ! ଝିଅ ମାଆଟି ମୋର !"



# ଉଜାଣି ସୁଅ

ଶ୍ରୀ ଦୁର୍ଗାମାଧବ ମିଶ୍ର

ଖାକି ହାଫ୍‌ପ୍ୟାଣ୍ଟ ଆଉ ଧଳା ହାଫ୍‌ସାର୍ଟ ପିନ୍ଧି ଭଙ୍ଗା ସାଇକେଲ୍‌ରେ ଛୁଟିଛନ୍ତି ପ୍ରଭାକର ବାବୁ । ଏ ସେହି ପ୍ରଭାକର ବାବୁ ଯେ କି ମଟରଗାଡ଼ି ଛଡ଼ା କେବେ ବି ବଜାରେ କେଉଁଠିକି ଯିବାର କେହି ଦେଖି ନଥିଲେ । କୋଠିରୁ ଅଫିସ୍ ଏକ ଫର୍ଲଙ୍ଗ ରାସ୍ତା, ସେତକ ଆସିବାକୁ ମଧ୍ୟ ଗାଡ଼ି ଦରକାର । ତା' ନ ହେଲେ ଅଫିସର ଚପ୍ରାସି ସଶସ୍ତ୍ର ହୋଇ ଦଉଡ଼ି ଆସିବ କପଟ ଦରଜା ଖୋଲିବାକୁ ?

ଗୋଟିଏ ବିଷୟରେ ସତର ଥର ଲେଖାଏ ସେ ନିଜ କୋଠକୁ ଅଧସ୍ତନ କର୍ମଚାରୀମାନଙ୍କୁ ଡକାଇ ପଠାନ୍ତି । ଅଧ ଡଜନ ଚୌକି ପଡ଼ିଥିଲେ ମଧ୍ୟ ସେମାନଙ୍କୁ ବସିବାକୁ କହନ୍ତି ନାହିଁ । ସେମାନେ ଘଣ୍ଟା ଘଣ୍ଟା ଧରି ଛିଡ଼ା ହୋଇଥାଆନ୍ତି ।

ତମମାନଙ୍କଦ୍ୱାରା କିଛି ହେବ ନାହିଁ ! ବୁଝିଲ ? ବରଂ ତୁମେ ସ୍ୱେଚ୍ଛା-ଅବସର ଗ୍ରହଣ କର । କିମ୍ବା,

ମୁଁ ବୁଝିପାରୁ ନାହିଁ ପ୍ରତି ମାସ ପହିଲାରେ କିପରି ତୁମେ ତୁମ ଦରମା ନେଇ ଯାଉଛ । ଦିନେ ହେଲେ ବି ନିଜକୁ ପଚାରୁଛ, ଏ ଦରମା ପାଇବାକୁ ମୁଁ ହକ୍‌ଦାର କି ? ମୁଁ କଣ କାମ କରୁଛି ଏ ମାସରେ ଏତେଟଙ୍କା ପାଇବା ପାଇଁ ?

ଅଥବା, ଯେତେ ଯେଉଁଠି ଅକର୍ମଣ୍ୟ ଲୋକ ସବୁ ଆସି ଏଇଠି ହାଜର ହୋଇଛ । ରହ, ତୁମକୁ ସବୁ ଦେଖି ଦେଉଛି ।

ବିଚରା କର୍ମଚାରୀଙ୍କ ପିଲେହି ପାଣି । ପ୍ରଭାକର ବାବୁ ଗରଜିଲା ମେଘ ନୁହନ୍ତି । ସେ ଯାହା କହନ୍ତି ତାହା କରନ୍ତି ।

ତଟସ୍ଥ ହୋଇ କେତେକ କର୍ମଚାରୀ ବେହୋସ ହୋଇଯାଆନ୍ତି । କେତେକ ଶ୍ରେଷ୍ଠ ପିଲାପରି କାନ୍ଦିବାକୁ ଆରମ୍ଭ କରିଦିଅନ୍ତି । ଏ ଦୁଇ ଶ୍ରେଣୀର ଲୋକଙ୍କୁ ପ୍ରଭାକର ବାବୁଙ୍କର ଭାରି ଘୃଣା । ସୌଜନ୍ୟ ରକ୍ଷା ଦୃଷ୍ଟିରୁ କିଛି କହନ୍ତି ନାହିଁ ସତ୍ୟ: କିନ୍ତୁ ତାଙ୍କର ଇଚ୍ଛା ହୁଏ, ଏମାନଙ୍କୁ ଦି ଗୋଇଠା ଦିଅନ୍ତେ ।

ପ୍ରଭାକର ବାବୁ କିନ୍ତୁ ଅବସର ଗ୍ରହଣ କଲେ । ଗ୍ରହଣ କରିସାରିଲେ ମଧ୍ୟ, କର୍ମଚାରୀମାନଙ୍କର ଗୋପନୀୟ ଚରିତ୍ର-ପଞ୍ଜି ମାମୁଲିକ ଲେଖିଲେ ନାହିଁ । କାରଣ ସେତେବେଳେ ଲେଖିଦେଲେ ଆଉ ତାଙ୍କୁ ବଦାନ୍ୟ ସମ୍ବର୍ଦ୍ଧନା ମିଳିବ ନାହିଁ । ଦଳ ଦଳ କର୍ମଚାରୀମାନେ ତାଙ୍କୁ ବିପୁଳ ସମ୍ବର୍ଦ୍ଧନାରେ ପୋତି ପକାଇଲେ । ଅନେକ ଦାମୀ ଉପହାର ମିଳିଲା । ଅବସର ଗ୍ରହଣ ପରେ ଗୋପନୀୟ ପଞ୍ଜିକାଗୁଡ଼ିକ ଲେଖିବାପାଇଁ ଛମାସ ଲାଗିଲା । ସେ ଛଅମାସ ତାଙ୍କ ଖାତିର କୌଣସି ଗୁଣରେ କମିଲା ନାହିଁ ।

କିନ୍ତୁ ସରକାରଙ୍କର କଡ଼ା ତାଗିଦା ପାଇ ତାଙ୍କୁ ଚରିତ୍ର ପଞ୍ଜିକାଗୁଡ଼ିକ ଦାଖଲ କରିବାକୁ ପଡ଼ିଲା । ନ ହେଲେ, ପେନ୍‌ସନ୍ ଧାରଣରେ ବିଳମ୍ବ ହେବ

ବୋଲି ଧମକ ଅସିଲା । ସେତକ ଦାଖଲ କରିବା ପୂର୍ବରୁ ଅଧସ୍ତନ କର୍ମଚାରୀ—ମାନଙ୍କର ସହଯୋଗରେ ନିଜର ପୁରୁଣା ଗାଡ଼ିଟିକୁ ନୂଆ ଗାଡ଼ିଠାରୁ ଅଧିକ ଦାମ୍‌ରେ ବିକ୍ରୀ କରିଦେଲେ, ସରକାରୀ ଘର ଛାଡ଼ି ସହରର ଭଡ଼ା ଦେଇଥିବା ଦ୍ୱିତଳ ପ୍ରାସାଦକୁ ଉଠିଆସିଲେ । ଫୋନ୍ କଟିଗଲା ।

"ବୁଝିଲ ଚନ୍ଦ୍ରମା, (ଚନ୍ଦ୍ରମା ତାଙ୍କ ସ୍ତ୍ରୀ) ଆଜି ମୋର ପ୍ରକୃତ ମୁକ୍ତି ହୋଇଗଲା ।" ତା'ପରେ ସେ ଗ୍ରେଟ ପିଲଙ୍କ ପରି କାନ୍ଦିବାକୁ ଲାଗିଲେ ।

ଚନ୍ଦ୍ରମା ବିବାହ ଦିନଠାରୁ ଏ ଅଦ୍ଭୁତ ଲୋକଟିକୁ ଚିହ୍ନି ପାରି ନ ଥିଲେ । ଆଜି ବା ଚିହ୍ନିବେ କିପରି ? ସେ କେବଳ ତାଙ୍କ ଆଖିରୁ ଲୁହ ପୋଛି ଦେଲେ ।

ଏବେ ମଧ୍ୟ ଦ'ଟୋପା ଲୁହ ତାଙ୍କ ଆଖି କୋଣରେ ଜକେଇ ଆସିଲା ସଦ୍ୟ ଛାତରୁ ବହଳା ଗ୍ରୁଡଗନ୍ଧ ପରି । ସେ ଅସ୍ଥିର ହୋଇ ଉଠିଲେ । ସାଦିନ କନାର ରୁମାଲଟା କାଢ଼ି ଆଖିରେ ବୁଲେଇ ଦେଲେ ସେ ।

ସେପ୍ଟେମ୍ବର ମାସର ଉତ୍ତପ୍ତ ମଧ୍ୟାହ୍ନରେ ପଟ୍ଟନାୟକ ବାବୁ ଚାଲିଛନ୍ତି । ସାଇକେଲ ଚଢ଼ିବାର ଅଭ୍ୟାସ ନାହିଁ । କଲେଜରେ ପଢ଼ିଲାବେଳେ ଯେତିକି ସାଇକେଲ ଚଢ଼ିଥିରେ ସେତିକି । ଏ ମଧ୍ୟରେ ଦୀର୍ଘ ପଚିଶବର୍ଷର ବ୍ୟବଧାନ ।

ନିଜ ଅଫିସ ସାମନାରେ ସାଇକେଲର ଗଡିକୁ ଶିଥିଳ କଲେ ପଟ୍ଟନାୟକ ବାବୁ । ଧୀରେ ଧୀରେ ଓହ୍ଲାଇ ପଡ଼ିଲେ ସେ । ତାଙ୍କ ହାତରୁ ସାଇକେଲ୍‌ଟା ନେଇଯିବା ପାଇଁ କେହି ଆଗେଇ ଆସିଲେ ନାହିଁ । ପୋର୍ଟିକୋ ପାଖରେ ସାଇକେଲ୍‌ଟି ଡେରି ଦେଇ ଉପର ମହଲା ଉଠି ଯାଉଥିଲେ ସେ ।

···କିଏ ସଦାଶିବ; ସବୁ ଭଲ ?

ନିଜର ପୁରାତନ ଚପ୍ରାସି ସଦାଶିବକୁ ସମ୍ଭାଷଣ କରିବାକୁ ପଡ଼ିଲା ତାଙ୍କୁ ।

···ହଁ ଆଜ୍ଞା ।

(ମୋତେ ପରଖି ସବୁ କାମ କରାଇ ମନବୋଧ ହୋଇ ନ ଥିଲା ଯେ ଶଟାସ୍ୱାରର ଦ'ଦନ ପୂର୍ବରୁ କୋଡ଼ିଏ ଟଙ୍କା ଜରିମାନା ଓ ଦ'ଦନର ଦରମାକୁ ବନ୍ଦ କରିଥିଲେ ନା ।)

ସେ ମୁହଁ ଫେରାଇ ଚାଲିଗଲା ।

ପିଏ ଅଫିସ ରୁମ୍‌କୁ ପଶି ଯାଉଥିଲେ । କିନ୍ତୁ କବାଟ ଯେ ବନ୍ଦ ।

—କିରେ, ସାହେବ ନାହାନ୍ତି ?

—ଅଛନ୍ତି ଆଜ୍ଞା, ବିଶ୍ରାମ କରୁଛନ୍ତି, ତିନଟା ବେଳକୁ ଉଠିବେ ।

ଘଡ଼ିକୁ ଅନେଇଲେ ପଟ୍ଟନାୟକ ବାବୁ । ଗୋଟାଏ ବାଜିଛି । ତିନଟା ପର୍ଯ୍ୟନ୍ତ ବିଶ୍ରାମ କରିବେ ଶୋଭେଶ । ଲୋକଟା ସତରେ ଅଲଗୁଆ ନିକମା । ମୋ'ର ତା' ବିଷୟରେ ଗୁପ୍ତ ଚରିତ୍ର ପଞ୍ଜିକାରେ ଏବେ ଲେଖିବା ଉଚିତ ଥିଲା । ମୁଁ ତ ଭୁଲ କରିଛି । ନ ହେଲେ ସେ କ'ଣ···ଗୁଡ଼ ।

—ଆଜ୍ଞା, ବଡ଼ବାବୁ କାହାନ୍ତି ?

—ଅଛନ୍ତି, ତାଙ୍କ ସିଟ୍‌ରେ ।

ସଦାଶିବ ତାଙ୍କ ସହିତ ଯେତେ ସଂକ୍ଷିପ୍ତ ସମ୍ଭବ ସେତିକି କଥା କହୁଛି ।

ବଡ଼ବାବୁଙ୍କ ପାଖକୁ ଯିବେ କି ? ପାଞ୍ଚ ମିନିଟ୍ ଚୁପ୍ ହୋଇ ଛିଡ଼ା ହୋଇଗଲେ ପ୍ରଭାକର ବାବୁ । ଯାହାଙ୍କୁ ଦିନକୁ ସତରଥର ସେ ନିଜ ପାଖକୁ ଡକାଉଥିଲେ, ତା'ର ପାଖକୁ ଯିବାକୁ ପଡ଼ିବ ?

କିନ୍ତୁ ଉପାୟ କ'ଣ ? ଗରଜ ଯେ ତାଙ୍କର ।

ଆଜିକୁ ବର୍ଷେ ହେବ ପେନ୍‌ସନ କାଗଜ ଏ ଅଫିସରୁ ଯାଉ ନାହିଁ ।

—କ'ଣ ବାବୁ ଭଲ ଅଛନ୍ତି ?

ହଁ ସେଇମିତି ।

ମୁଁ ହଁ ଟାକୁ ଅମୂଲା କରି ଦେଇ ବଡ଼ବାବୁ କହିଲେ,

—ବସନ୍ତୁ ସାର୍, ବସନ୍ତୁ ।

ଅରେ ହେ ସଦାଶିବ, ଚଉକିଟାଏ ଆଣରେ...ଚୌକି ଖଣ୍ଡେ ହେଲେ କ'ଣ ଅଛି ? ଅପଣଙ୍କୁ ସାର୍ କହୁ ନ ଥିଲି, କିଏ ଭଦ୍ରଲୋକ ଆସିଲେ ଗଲେ, ଚୌକି ଖଣ୍ଡେ ବସିବାକୁ ନାହିଁ । ଆପଣ ତ ମନାକଲେ, "ଚୌକି କ'ଣ ହେବ ? ଯେ ଆସିବ ସେ ଠିଆ ଠିଆ କଥା ହୋଇ ଚାଲିଗଲେ ସମୟ ନଷ୍ଟ ହେବ ନାହିଁ ।"

କହନ୍ତୁ ସାର୍, କ'ଣ ହେଲା କହନ୍ତୁ

ବଡ଼ବାବୁ ବସିଥିଲେ ପ୍ରଭାକର ବାବୁ ଠିଆ ହୋଇଥିଲେ । ସଦାଶିବ ଚଉକି ଆଣୁ ନ ଥିଲା ।

— ବଡ଼ବାବୁ । ମୋ ପେନ୍‌ସନ କାଗଜଟା...

—ସାର୍ । ମୋ ପାଖରେ କ'ଣ କିଛି ହେଲା କେବେ ଆପଣ ଦେଖିଛନ୍ତି ? (ପ୍ରତିବର୍ଷ ଛଅଟା ସେନ୍‌ସର, ୧୫ ଦିନ ବିନା ଦରମା ଛୁଟି, ଦୁଇ ଥରଟା ପ୍ରୋସିଡିଙ୍ଗ)—ସବୁ କରି ଦେଇଛି । ଏବେ ଯାଞ୍ଚ ହେଉଛି ।

— ଯାଞ୍ଚ ଆଉ କେତେଦିନ ଲାଗିବ ? ବର୍ଷେ ତ ପୂରିଲା ?

ତଥାପି ଚଉକି ଆସି ନାହିଁ ।

ବଡ଼ବାବୁ ବସିଛନ୍ତି ।

ପ୍ରଭାକର ବାବୁ ଠିଆ ହୋଇଛନ୍ତି ।

— ହୋଇଯିବ ସାର୍, ହୋଇଯିବ ।

ବଡ଼ବାବୁଙ୍କ ମୁହଁ ହସରେ ଆମୋଦିତ । ଏତେ ତତ୍ପର ହେଲେ କିମିତି ହେବ ? ସେ ତା'ର ଛଉ କୋର୍ଟରେ ମାନେ ନର୍ଗାଳିତ ସମସ୍ତ କଟକେ

ହେବ । ତେବେ ନିଶ୍ଚୟ ହେବ । (ଏ ପ୍ରଭାକର ବାବୁଙ୍କ ଭାଷା । ସମସ୍ତଙ୍କୁ ସେ ଏହା କହୁ ଥାଆନ୍ତି ।)

ପ୍ରଭାକରବାବୁ ଚୌଧାନ୍ଧ ହୋଇଗଲେ ।

—ବଡ଼ବାବୁ, ଆପଣ ଏମିତି କ'ଣ କହୁଛନ୍ତି ?

ଗର୍ଜି ଉଠିଲେ ସେ । ଭଦ୍ରଦର ସୁଇଁ ସୁଇଁ ଶବ୍ଦ ତାଙ୍କର ମୁଣ୍ଡ ଉପରେ ତାଣ୍ଡବ ସୃଷ୍ଟି କରୁଥିଲା ।

ବଡ଼ବାବୁ ମୃଦୁ ହସିଲେ ।

—ସାର୍, ଆପଣଙ୍କର ଶରୀର ବୋଧହୁଏ ଅସୁସ୍ଥ । ଟିକିଏ ବସନ୍ତୁ···

ଆରେ ଏ ସଦାଶିବ । କୁଆଡ଼େ ଗଲା ଚଣ୍ଡାଳଟା । (ଏ ମଧ୍ୟ ପ୍ରଭାକର ବାବୁଙ୍କ ଭାଷା ।)

—ଆପଣ ମୋତେ ବିଦ୍ରୂପ କରୁଛନ୍ତି ବଡ଼ବାବୁ । ମୁଁ ଏଇକ୍ଷଣି ଶୋଭେଶଙ୍କୁ ଡାକୁଛି—

ଶୋଭେଶ······ଶୋଭେଶ······

ଦହାଡ଼ିଲେ ପ୍ରଭାକର ବାବୁ । ମତ୍ତହସ୍ତୀ ପରି କବାଟକୁ ବଜ୍ର ମୁଷ୍ଟିରେ ପ୍ରହାର କଲେ ସେ ।

—କିଏ ? କିଏ ସେ ?

—ମୁଁ ପ୍ରଭାକର, ଶୋଭେଶ !

ଓଃ, ଆଚ୍ଛା, ଟିକିଏ ଅପେକ୍ଷା କରନ୍ତୁ ।

ପ୍ରାୟ ପୂର୍ଣ୍ଣ ପନ୍ଦର ମିନିଟ୍ ଅପେକ୍ଷା କରିବାକୁ ପଡ଼ିଲା ପ୍ରଭାକର ବାବୁଙ୍କୁ । ପନ୍ଦର ମିନିଟ୍ ତାଙ୍କୁ ପନ୍ଦରଟି ଯୁଗ ପରି ଲାଗିଲା ସିମିତ । ନିଜର କୋଠରୀ, ତାଙ୍କର ସମୟରେ ସେ ଲଗାଇଥିଲେ ଫୁଲ କବାଟ । ସେ ଯେଉଁ ପରଦା କିଣିଥିଲେ ସେ ସିମିତ ଝୁଲୁଛି । ସେଇ ନମ୍ବର ସେହି ଜାଗାରେ ଅଛି । କିନ୍ତୁ ନାମ ଫଳକରେ ପ୍ରଭାକର ଦାସ ପରିବର୍ତ୍ତେ ଲେଖା ହୋଇଛି ଶୋଭେଶ ସାମନ୍ତସିଂହାର ସେଢକରେ—

ଧଡ଼୍ କିନା କବାଟ ଖୋଲିଲା । ସମ୍ପୂର୍ଣ୍ଣ ନୁହେଁ ଅଧା । ଅଲୁଳାୟିତ ବେଶ ଶୋଭେଶ, ବିରକ୍ତରେ ଭ୍ରୁ, ତା'ର କୁଞ୍ଚିତ ।

କବାଟ ଭିତରୁ ଉଙ୍କିମାରି ଶୋଭେଶ କହିଲା "କ'ଣ ହେଲା ? ଏତେ ପାଟି କାହିଁକି ?"

—ଶୋଭେଶ୍ ମୁଁ ଭିତରକୁ ଯିବି, ସବୁ କହିବି । ଶୁଣୁଛୁ ଶୋଭେଶ୍ ତୋ' ବଡ଼ବାବୁ ମୋତେ ଅପମାନ କରୁଛି···ମୋ ପେନସନ···

ତାଙ୍କୁ ଭିତରକୁ ଯିବାକୁ ଦେଲା ନାହିଁ ଶୋଭେଶ ।

—ଆପଣଙ୍କର ଯାହା କର୍ମଜୀବନ ମାନେ ଅଭିଯୋଗ ଅଛି ଲେଖିକରି ଦିଅନ୍ତୁ । ମୁଁ ଏ ମୌଖିକ ଆପତ୍ତି ଶୁଣିବାକୁ ପ୍ରସ୍ତୁତ ନୁହେଁ (ଏ ପ୍ରଭାକର ବାବୁଙ୍କ ଭାଷା । ଆଉ ଆପଣଙ୍କର ପେନସନ କଥା ମୁଁ ବୁଝିବି । ଯାଆନ୍ତୁ ।

ଧଡ଼କରା କବାଟଟା ବନ୍ଦ ହୋଇଗଲା ପ୍ରଭାକର ବାବୁଙ୍କ ମୁହଁ ଉପରେ । ଆଉ ଭିତରୁ ଶୁଭିଲା ସ୍ୱର ଗୋଟିଏ ଲମ୍ବା ··ଏ, ଏ ସ୍ୱର ତ ପରିଚିତ । ଏ ତ ସୁଜାତାର ସ୍ୱର ସେହି ସୁଜାତା, ଯାହାକୁ ସେ ଟାଇପିଷ୍ଟ ଚାକିରି ଦେଇଥିଲେ । ତେବେ ସୁଜାତା ଆଉ ଶୋଭେଶ···ନା,···ନା···ମୁଣ୍ଡ ଭିତର ଗୋଳମାଳ ହୋଇଗଲା ପ୍ରଭାକର ବାବୁଙ୍କର । ଅସଂଖ୍ୟ ହାତୁଡ଼ି ମାଡ଼ ଭିତରେ ଯେମିତି ସ୍ତବ୍ଧ ହୋଇ ଯାଉଥିଲେ ସେ ।

ଫେରିବାକୁ ସେ ପାଦ ବଢ଼ାଇଲେ, କିନ୍ତୁ ପ୍ରଥମ ପାଦ ଉଠାଇ ପକାଇଲା ବେଳକୁ ଯେମିତି ଭୂମିକମ୍ପ ହେଲା । ସେ ପାଦ ଆଉ ତଳେ ପଡ଼ିପାରିଲା ନାହିଁ । କଦଳୀ ଗଛ କାଟିଲା ପରି ସେ ସେଠାରେ ଭୂଲୁଣ୍ଠିତ ହୋଇଗଲେ ।

ସଦାଶିବ ଆଜ୍ଞା ନଡ଼ବାବୁ ଦୌଡ଼ି ଆସିଲେ, କିନ୍ତୁ କେହିହେଲେ ଆଶ୍ରୟ ଦେବାକୁ ହାତ ବଢ଼େଇ ଦେଲେ ନାହିଁ ।

ତାଙ୍କ ଅଫିସ ଘର ଭିତରୁ ସ୍ୱର ଅଫୁରନ୍ତ ଜୁଆର ସେଇମିତି ଛୁଟୁଥିଲା ।



# ଅନ୍ଧାର

ଚନ୍ଦ୍ରଶେଖର ରଥ

ବୁଢ଼ା ହେଲେ ସୁଦ୍ଧା ଆମର ଭୋକଭୟ ଯାଏ ନାହିଁ । ଏଣୁ ଅନ୍ଧାରରେ ଆଖି ବୁଜି ଘୋଡ଼ାଘୋଡ଼ି ହୋଇ ଶୋଇପଡ଼ିବା ଆମର ଗୋଟାଏ ଦୁର୍ଲଙ୍ଘ୍ୟ ପ୍ରବୃତ୍ତି । କମ୍ବଳ ଭିତରେ ମିଟିମିଟି ଅନେଇଁ ବରଂ ପଡ଼ି ରହୁ, କିନ୍ତୁ ଖୋଲାଖୋଲି ଅନ୍ଧାରକୁ ଭ୍ରମଣ କରି ବିଚରଣ କରି ପାରୁନା, କାରଣ ଆମେ ନିଶାଚର ନୋହୁଁ । ଆମେ ଅନ୍ଧାରକୁ ଡରୁ, ତାକୁ ଘୃଣା କରୁ, ତାକୁ ନାଶ କରିବାକୁ ସବିତା ମଣ୍ଡଳରେ ଥିବା ଜ୍ୟୋତିଷ୍ମାନ ପୁରୁଷଙ୍କୁ ଆବାହନ କରୁ । ଆମେ ସବୁ କୁଆଡ଼େ ଆଲୋକର ସନ୍ତାନ । ଏଣୁ ଅନ୍ଧାରକୁ ଜୟ କରିବା ଓ ତାକୁ ଦୂର କରିବା ଆମର ସହଜାତ କର୍ତ୍ତବ୍ୟ ?

କିନ୍ତୁ ଆଲୁଅକୁ ନିଜର ବୋଲି ଯେତେ ଜାବୁଡ଼ି ଧରିଲେ ମଧ୍ୟ ସେ ଅନିବାର୍ଯ୍ୟ ଭାବରେ ପଶ୍ଚିମରେ ନିସ୍ତେଜ ବୁଡ଼ିଯାଏ ଏବଂ ସେମିତି ଅନିବାର୍ଯ୍ୟ ଭାବରେ ଅନ୍ଧାର ମାଡ଼ି ଆସେ । ସେ ଦୁର୍ଧର୍ଷ ବାହିନୀ କେଉଁ ଅନନ୍ତ କାଳରୁ ଘୋଡ଼ା ଗୋଡ଼େଇ ହୋଇ କେହି ତାହାକୁ ଛୁଇଁ ପାରିନାହାନ୍ତି, ଝପି ମାରି ନାହାନ୍ତି । ଆମେ ବୁଝିଲେ ଯେ ଅନ୍ଧାରକୁ ରୋକି ଦେବୁ, ଏମନ୍ତ ନୁହେଁ । ଗୋଲକାର ପୃଥିବୀ ତା' ମେରୁଦଣ୍ଡରେ ବୁଲୁଥିବା ପର୍ଯ୍ୟନ୍ତ ଏବଂ ସୂର୍ଯ୍ୟପିଣ୍ଡଟି ନ ଲିଭି ଜଳୁଥିବା ପର୍ଯ୍ୟନ୍ତ ଆଲୁଅ ଯେତିକି ପରିମାଣରେ ସତ୍ୟ ଏବଂ ଅନିବାର୍ଯ୍ୟ ଅନ୍ଧାର ମଧ୍ୟ ସେତିକି ପରିମାଣରେ ସତ୍ୟ ଏବଂ ଅନିବାର୍ଯ୍ୟ ।

କୌଣସି ଏକ ଅଧମ ନକ୍ଷତ୍ରଙ୍କ ଅନ୍ଧାରରୁ ହିଁ ବୋଧହୁଏ ଆଲୁଅର ଜନ୍ମ । ସେ ଏକ ବିଦ୍ରୋହ, ଏକ ଉଦ୍‌ବର୍ତ୍ତନ । ଏଣୁ ତା'ର ଦୁର୍ଭେଦ୍ୟ ବ୍ୟୂହ ଭିତରକୁ ତାକୁ ଫେରେଇ ନେବାପାଇଁ ଅନ୍ଧାର ତା' ପଛରେ ଗୋଡ଼େଇ ଚାଲିଛି । ପଳାତକ ଆଲୁଅ ଅମାନିଆ ଶିଶୁ ପରି ହଠରେ ଫାଟି ପଡ଼ୁଛି, ଭୁଶି ହୋଇଯାଉଛି । ସେଇ ପରିମାଣରେ ଝରିଯାଉଛି, ବଢ଼ିଯାଉଛି, । ଶେଷରେ ଏ ସନ୍ତାନଟି ସେଇ ଆଦିମ ଜନୟିତ୍ରୀର କୋଳ ଭିତରେହିଁ ବିଲୟ ଲଭିବ । ଅନନ୍ତ ଆକାଶରେ ସପଶା ଆଲୋକ ବିନ୍ଦୁ ଲିଭିଯିବେ । ନକ୍ଷତ୍ରଙ୍କ ଅନ୍ଧାର ପୁଣି ଘାରିଲେ ଶୋଇପଡ଼ିବ ଅନନ୍ତ କାଳପାଇଁ ।

ଏ ସବୁ ନ ଜାଣି ମଧ୍ୟ ପିଲାଟିଦିନୁ ଆମେ ଅନ୍ଧାରକୁ ଡରୁ କାରଣ ତା' ଭିତରେ ସବୁ ସମ୍ଭବ । ସୃଷ୍ଟି ଆରମ୍ଭରେ ଯେମିତି କେବଳ ପୁଞ୍ଜିଏ ଉପାଦାନ ଥିଲା କିନ୍ତୁ ବସ୍ତୁ ନଥିଲା, ଏଣୁ ଯେ କୌଣସି ବସ୍ତୁର ସମ୍ଭାବନା ହିଁ ଥିଲା ସେମିତି ରାତିରେ ଅନିଶ୍ଚିତତା । ସେଇଟା ବୃକ୍ଷ ନ ହୋଇ ମଣିଷ ହୋଇପାରେ, ଘୋଡ଼ା ନ ହୋଇ ଗାଡ଼ି ହୋଇପାରେ । ସେତିକିବେଳେ ଡାହାଣୀ, ଚିରୁଗୁଣୀ, ମଲାମଣିଷଙ୍କ ପ୍ରେତ,

ଯକ୍ଷ, ରକ୍ଷ, ପିଶାଚ ସବୁ ଫେରି ଆସନ୍ତି, କଳ୍ପନା କରୁକରୁ ସେ ଠିଆହୋଇ ଯାଆନ୍ତି । ଆମେ କହୁ ସ୍ୱପ୍ନ ଏମିତି ଭେକଟୋକ କଥା । ଏଣୁ କିଛି ନ ଭାବି ହୁଏତ ଶୋଇଯାଉ । ଭୟ ଆମର ଅତି ଆଦିମ ମୌଳିକ ପ୍ରବୃତ୍ତି ।

ଆମେ ଅନ୍ଧାରକୁ ଡରୁ ଯେତ କହୁ ସତ୍ୟକୁ ମଧ୍ୟ ଡରୁ । ତାକୁ ଅନେକ ପ୍ରକାର ଆବରଣରେ ଘୋଡ଼େଇ ମୁଖା ପିନ୍ଧେଇ ରଖିଥାଉ । ଏ ବିରାଟ ରଙ୍ଗମଞ୍ଚରେ ସୂର୍ଯ୍ୟଦୀପ ଅହରହ ଜଳୁଥାଏ । ଆମେ ତା ଆଲୁଅରେ ଚମତ୍କାର ଅଭିନୟ କରୁ । ଅନେକ ବେଶ ପୋଷାକ, ଛଇ ଛଟକାଇ ଅଟ୍ଟା ଟୋପ ହାକିମ, ଅମଲା ମନ୍ତ୍ରୀ ସନ୍ନ୍ୟାସୀଙ୍କର ବିଭିନ୍ନ ଭାବଭଙ୍ଗୀର ପରିପାଟି ! ଜଣେ ଏକାଧିକ ଭୂମିକାରେ ଅଭିନୟ କରି କ୍ଲାନ୍ତ ହୋଇ ପଡ଼ନ୍ତି । ସଙ୍ଗୀତ, ସାହିତ୍ୟ, ସଭାସମିତି ଓ କଳାବିଜ୍ଞାନର ବିଭିନ୍ନ ଭୂମିକାରେ କୋଟି କୋଟି ଅଭିନେତା ଏ ରଙ୍ଗମଞ୍ଚରେ ନାଚି ଯାଆନ୍ତି । ସୂର୍ଯ୍ୟଦୀପ ମଧ୍ୟ କ୍ଲାନ୍ତ ହୋଇଯାଏ, ତା'ର ଅପଲକ ଆଖି ବୁଜି ହୋଇଯାଏ । ଯା' ପରେ ସେ ଅନ୍ଧାର ସମସ୍ତଙ୍କୁ ଘୋଡ଼ାଇ ଦେଇପାରେ, ସମସ୍ତଙ୍କୁ ପରସ୍ପରଠାରୁ ଲୁଚେଇ ଦେଇପାରେ ଗୋଟିଏ ଆବରଣ । ଏଇଟା ପ୍ରେକ୍ଷାଳୟ । ଏଇଠି ସବୁ ଅଭିନେତା ନିଜ ଗ୍ରୁଣ୍ଡ ମୁଖା ଫିଙ୍ଗେଇ ପକାନ୍ତି । କିଏ ଖାଲି ପୋଛେ କିଏ ବଡ଼ ଟାଣେ । ରାମଲୀଳାର ହନୁମାନ ତା ଲାଙ୍ଗୁଡ଼ ଖସେଇ ଥୋଇଦିଏ ।

ଅନ୍ଧାରରେ ସମସ୍ତେ ତାଙ୍କ ମୌଳିକ ସତ୍ତାକୁ ଫେରି ଆସନ୍ତି । କିଛି ଲୁଚେଇବାର ବା ଘୋଡ଼େଇବାରେ ପ୍ରୟୋଜନ ନଥାଏ । ଅଭିନୟ ନକରି ଖୁବ୍ ନିବିଡ଼ ଭାବରେ ମଣିଷ ବସେ ଏଇ ଅନ୍ଧାରରେ ତାକୁ ଅନେକ ଉଲ୍ଲାସ ଲାଗେ, ସ୍ୱାଭାବିକ ଲାଗେ ଏବଂ ହସମାନେ କେମିତି ଏ ନିରାଟ ସତ୍ୟଗୁଡ଼ାକୁ ଅଣ୍ଟି ଲ କହି ସେ ଘୋଡ଼ଇ ପକାଉଥିଲ ଗୋଟାଏ ସାମାଜିକ ଆଲୁଅର କୋଲାହଳ ଭିତରେ । ଏଇ ଅନାବୃତ ନଗ୍ନ ମୁହୂର୍ତ୍ତଗୁଡ଼ାକ ଜୀବନର ମୌଳିକ ଉପାଦାନରେ ସମୃଦ୍ଧ, ବଞ୍ଚିବାର ସତ୍ୟତାର ମଞ୍ଜ ପର୍ଯ୍ୟନ୍ତ ଭରପୂର । ଆଲୁଅଠାରୁ ଅନ୍ଧାର ବେଶୀ ସତ, ବେଶୀ ଘନିଷ୍ଠ, ବେଶୀ ଆପଣାର । ଆମେ ଅନ୍ଧାରକୁ ହୁଏତ ଭୟ କରୁନା । ଆମେ ତାକୁ ଭଲ ପାଉ । ମନେ ମନେ ଝୁରୁଥାଉ । ଅଭିନୟର ଉତ୍ତାଓଟରେ ଭିତରେ ମଧ୍ୟ ଅନ୍ଧାରକୁ ଲୋଡ଼ୁଥାଉ । ଆଲୁଅ ଭଳି ଅନ୍ଧାର ଏତେ ନିର୍ମମ ନୁହେଁ । ସେ ଛିନ୍‌ଭିନ୍‌ ସବୁ ଖୋଲି ଦେଖାଏ ନାହିଁ । ଘୋଡ଼େଇ ପକାଏ, ନିବିଡ଼ ଭାବରେ ଅନୁଭବ କରିବାକୁ ସୁଯୋଗ ଦିଏ । ଆମ ଭିତରେ ଯଦି ଆଲୁଅର ଉପନିବେଶ କିଛି ଥିଲେ ସେ ସବୁ ଯାଯାବର ସଂସ୍ଥା । ତା'ର ନୂଆ ବାସିନ୍ଦା ସବୁ ସ୍ୱେଚ୍ଛାଙ୍କ ଶାସକ । କିନ୍ତୁ ଭିଟାମାଟିକୁ ଲାଗି ଯେତେସବୁ ମଳିଛୁଆ ଗୁଡ଼ିଭଳି ଗୌରବରେ ପହଁରି ଯାଉଛନ୍ତି ଯାହାକୁ ଗଣି ହୁଏନାହିଁ, ବାଛି ହୁଏନାହିଁ, ଯେଉଁମାନେ ସେଇ

ମାଟିଭଳି ପୁରୁଣା ସେମାନେ ସବୁ ଆମର ! ଆମ ଭିତରେ ଆଲୁଅ ପଶିଗଲେ, ଆମେ ଗଛମୂଳେ ବୁଦାମୂଳେ ଲୁଚିଯାଉ । ସେ ଓହରିଗଲେ, ଆମେ ପରସ୍ପରର ଗନ୍ଧ ବାରି ପାଖେଇ ଆସୁ । ପ୍ରାଚୀନ ଅନ୍ଧାରର ସନ୍ତାନ ଆମେ । ଅନ୍ଧାର ଆମର ଜାୟା ଓ ଜନନୀ । ତାକୁ ଭୟ କରିବା ଏକ କୁସଂସ୍କାର ।

ନିଃସଙ୍କୋଚ ଅନ୍ଧାର ଭିତରେ ଆମେ ସମସ୍ତେ ଗୋଟିଏ ଗୋଟିଏ ଦ୍ୱିପଦ ପ୍ରାଣୀ । ଆମେ ସ୍ୱଶରୀରେ ଆମର ଅସଂଖ୍ୟ ଲୋମଶ ପୂର୍ବପୁରୁଷଙ୍କ ଉଷ୍ମ ଆମେ ସେଇଠି ଅନୁଭବ କରୁ, ଆମକୁ ଦୃଶ୍ୟତ ଦିଶେ ନାହିଁ, କିନ୍ତୁ ସବୁ ଅନୁଭବ କରିହୁଏ ଚମଡ଼ାକୁ ସବୁ ଅନ୍ଧାର । ସେଇ ଖୋଳ ଭିତରେ ଆମର ଅଜସ୍ର ନାଡ଼ୀ ସ୍ପନ୍ଦିତ ହୁଅନ୍ତି, ଖାଦ୍ୟ ପରିପାକ ହୁଏ—ପ୍ରାଣବାୟୁ ଯାତାୟାତ କରେ । ଏଣୁ ଅନ୍ଧାରରେ ହିଁ ଭୂକୁ ଦୂରୁଦୂରୁ ହେବା ଆମେ ଅନୁଭବ କରୁ, ଜଠରରେ ନିବିଡ଼ ତାପ ଅନୁଭବ କରୁ ।

ଆଲୁଅରେ ଦୃଷ୍ଟି ଫେରିଆସେ, ବ୍ୟବଧାନ ଫେରିଆସେ । ଦୃଷ୍ଟିରେ ଦୂରତା ଅନିବାର୍ଯ୍ୟ । କିନ୍ତୁ ସ୍ପର୍ଶରେ ବ୍ୟବଧାନ ନାହିଁ, ଦୂରତା ନାହିଁ । ତୃତୀୟ ସତ୍ତାର ସମ୍ଭାବନା ନାହିଁ ! ସ୍ପର୍ଶ ଆଉ ଏକ ପ୍ରକାର ଦୃଷ୍ଟି । ପ୍ରତି ଲୋମକୂପରେ ସହସ୍ରାକ୍ଷ ପରି ଉତ୍ତାପକୁ ପିଇ ହୁଏ, ଶିହରଣକୁ ଶୋଷି ହୁଏ । ଆଲୁଅ ଲିଭିଗଲେ ଆଖି ବୁଜିଯାଏ ସତ, କିନ୍ତୁ ଆଉ ସବୁଟା ଇନ୍ଦ୍ରିୟ ମନକୁ ମିଶେଇ ମାତି ଉଠନ୍ତି । ଅନ୍ଧାରରେ ଗୁଞ୍ଜରଣ ବେଶୀ ସଙ୍ଗୀତମୟ, ସ୍ୱାଦ, ଗନ୍ଧରେ ଆହୁରି ଅନେକ ମାଦକତା ଅନ୍ଧାର ସବୁ ସାଉଁଟି ଆଣେ, କେନ୍ଦ୍ରୀଭୂତ କରିଦିଏ, ଗଭୀରକୁ ଟାଣିନିଏ ! ଆଲୋକ ବିକ୍ଷିପ୍ତ କରିଦିଏ, ବିସ୍ତୃତ ବିକେନ୍ଦ୍ରିତ କରିଦିଏ । ଆଲୋକ ଅପେକ୍ଷା ଅନ୍ଧାର ବେଶୀ ଜୀବନ ଧର୍ମୀ, ବେଶୀ ବାସ୍ତବ ।

ବାସ୍ତବ ହେବା କିଛି ଲାଜ କଥା ନୁହେଁ । ନିଜେ ଯାହା, ତାକୁ ସହଜ ଭାବରେ ଖୋଲାଖୋଲି ମାନିନେବା ମିଥ୍ୟା ମଧ୍ୟ ନୁହେଁ । ତାକୁ ମିଥ୍ୟା ବୋଲି କହିଦେଇ ପରିହାର କରିଦେବା କିଛି ଖେଲଘର ମଧ୍ୟ ନୁହେଁ । ପ୍ଲାଟୋ କହିଲା ଭଳି, ଆମେସବୁ ଅନ୍ଧାରର ଗୁମ୍ଫା ଭିତରେ ବନ୍ଦୀ ଆଉ । ଆମ ଭିତରୁ ଜଣେ ଫିଟିଯାଇ ଆଲୋକର ସନ୍ଧାନ କରେ । ସେହିଭଳି 'ପ୍ରମିଥିଅସ୍' ମାନଙ୍କୁ କେହି ଅସ୍ୱୀକାର କରୁନାହିଁ କାରଣ ମୂଳତଃ ଆଲୋକକୁ କେହି ଅସ୍ୱୀକାର କରୁନାହିଁ । କିନ୍ତୁ ଯେତେବେଳେ ସେଇ ଆଲୋକ ସନ୍ଧାନୀମାନେ ଆସି ଅନ୍ଧାର ରାଜ୍ୟରେ ଉପଦ୍ରବ ସୃଷ୍ଟି କରନ୍ତି ଆମକୁ ଟିକିଏ ହସ ମାଡ଼େ । ଆସାମର ଚା' ବଗିଚାରେ ସ୍ୱରମାସ କାଟି ଅସିବା ପରେ ଓଡ଼ିଆ କୁଲିସର୍ଦ୍ଦାର ଘରେ ଆସି ହିନ୍ଦି କହେ, ଘାନ କରେ ଯେ ସେ ଆଉ ଓଡ଼ିଆ ନୁହେଁ, ଏଠିକାର ଭାଷା ତା'ର ଆଉ ପଇଟୁ ନାହିଁ ! ଭାଷା, ଅଗ୍ନି ବା ସବିତା ମାଧ୍ୟମରେ ବହୁବାର ଆଲୋକର ଆବାହନ

କଲେ ସୃଷ୍ଟି ମଣିଷର ମୌଳିକ ସତ୍ୟ ବିଷୟରେ ବେଦ ନୀରବ ନୁହେଁ । ପୁରାଣର ବିଶ୍ୱାମିତ୍ର ବହୁ ତପସ୍ୟା ପରେ ମଧ୍ୟ ମେନକା ପାଖରେ ସମସ୍ତ ଆବରଣ ତଳେ ଲୁଚି ରହିଥିବା ନିଜର ଅନାବୃତ ସତ୍ତାକୁ ସ୍ୱୀକାର କରନ୍ତି ।

ସେମାନେ କହିବା ଅନୁସାରେ ଏ ସତ୍ତାଟି କୁଆଡ଼େ ଆମର ଜାନ୍ତବ ପରିଚୟ ଏବଂ ସେଥିପାଇଁ ଆମକୁ ଲଜ୍ଜିତ ହେବା ଉଚିତ । ଲଜ୍ଜିତ ହେବାକୁ ଆମର ଆପତ୍ତି ନାହିଁ । କିନ୍ତୁ କାହିଁକି ଏବଂ କାହା ପାଖରେ ? ଯଦି ସବୁଠାରେ ଏଇ ଜନ୍ତୁଟି ହିଁ ଅନିବାର୍ଯ୍ୟ ସତ୍ୟ, ତା' ପାଇଁ ଲଜ୍ଜା କରିବାର-ପ୍ରୟୋଜନ କାହିଁ ? ଉଲଗ୍ନ ରାଜ୍ୟରେ ତ' ପରିଧେୟର କିଛି ଅର୍ଥନାହିଁ ଏବଂ ଅର୍ଥ ନାହିଁ ସେପରି କୌଣସି ଅଭିନୟ । କିନ୍ତୁ ଜୀବନରେ ଅସଂଖ୍ୟ କ୍ଷୁଧା ଏବଂ ସେଗୁଡ଼ିକ ଖୁବ୍ ସ୍ୱାଭାବିକ । ସେଗୁଡ଼ିକୁ ଲିଭେଇ ହୁଏନାହିଁ, ହୁଏତ ସନ୍ତୁଷ୍ଟ ମଧ୍ୟ କରି ହୁଏନାହିଁ । ତା' ବୋଲି ସେମାନଙ୍କୁ କମ୍ବଳ ଘୋଡ଼େଇ ଦେଇ ଉପରେ ସଫେଇ ଦେଖେଇ ହେବା ମିଥ୍ୟା ସ୍ତବ । ଯେତେ ଡାଳପତ୍ର କାଟିଲେ ମଧ୍ୟ ଉଦ୍ଭିଦ ମରିଯାଏ ନାହିଁ, ତା'ର ଉଲଗ୍ନ ଚେରଗୁଡ଼ିକ ଅନ୍ଧାର ମାଟି ଭିତରେ ମୁହଁ ବୁଡ଼େଇ ପ୍ରାଣରସ ଟାଣୁଥାନ୍ତି । ପୁଣି ଶାଖା ମେଲିଯାଏ, ପତ୍ରକଢ଼ ଉଦ୍ଗମ ଆସନ୍ତି । ଚେର ଲଗାଇ ଭିଡ଼ି ଫୋପାଡ଼ି ଦେଲେ ଯେଉଁ ମାଟିପିଣ୍ଡଟିକୁ ସେ ସହସ୍ର ପୁର ଗୁଡ଼େଇ ଧରି ରଖିଥିଲା ସେ ନିରାଧାର ଖସି ପଡ଼ିବ । ଜୀବନର ସମସ୍ତ କ୍ଷୁଧା ନିର୍ବାପିତ ହୋଇଗଲେ କେବଳ ନିସ୍ତବ୍ଧ ହୋଇ ପଡ଼ି ରହିଯିବ । ଜଙ୍ଗଲର ହିଂସ୍ରା ହିଁ ଯଦି ଜୀବନ ହୁଏ ତେବେ କ୍ଷୁଧା ନଥାଇ ବଞ୍ଚିବା ସମ୍ଭବ ନୁହେଁ । ବଞ୍ଚିବାକୁ ହେଲେ ଜନ୍ତୁଟି ହିଁ ବଞ୍ଚେ । ତା' ଉପରେ ଯେତେ ରଙ୍ଗମଖାଇ ଯେତେ ମୁଖା ଖଞ୍ଜିଲେ ମଧ୍ୟ ସେ ନିର୍ଭୁଲ ଭାବରେ ସେଇ ଜନ୍ତୁ ।

ଅନ୍ଧାର ଏଇ ଆଦିମ ଜନ୍ତୁଟିକୁ ହୁଗାଳି ଦିଏ । ଦିନ ଆଲୁଅରେ ଯେଉଁ ଜଞ୍ଜିରରେ ସେ ବନ୍ଧା ପଡ଼ିଥିଲା, ରାତିରେ ସେଇଟା ଫିଟି ଯାଏ ଏବଂ ଫିଟିଯାଏ ବୋଲି ରକ୍ଷା ହୋଇଯାଏ । ନାରୀ ଏବଂ ପୁରୁଷ ନିରାବରଣ ପରସ୍ପରକୁ ସ୍ୱୀକାର କରନ୍ତି । ସୃଷ୍ଟିର ଆଦିମ ଅନୁଶାସନ ଜାରି ରହେ । ନଚେତ୍ କେବଳ ଅଭିନୟ ଏବଂ ମିଛିମିଛିକା ଖେଳ ଭିତରେ ଜୀବନ ସରିଯାଆନ୍ତା । ଜରାୟୁରେ ଅମାପ ଅନ୍ଧାର ଏବଂ ମୃତ୍ୟୁର ଅନ୍ଧାର ଅପରିସୀମ । ଏ ଦୁଇଟି ବାହୁ ବେଢ଼ା ଭିତରେ ମଣିଷର ଚପଳତା, ଆଲୁଅ ଅନ୍ଧାରର ଲୁଚକାଳି ଭିତରେ ସରିଯାଏ । ଅନ୍ଧାରରୁ ଆସି ଅନ୍ଧାର ଭିତରେ ଆମେ ପୁଣି ପଶିଯାଉ । ରଙ୍ଗମଞ୍ଚର ଉଭୟ ପାଖେ ଅନ୍ଧାର । କେବଳ ଏ ପାଖରୁ ସେ ପାଖକୁ ଯିବାକଥା ?

ଆଲୁଅ ନିଜେ ଗୋଟାଏ ବିଦ୍ରୋହର ଶୋଭାଯାତ୍ରା । ସେପରି ଆଲୁଅ ପଛରେ ଗୋଡ଼େଇବା ମଧ୍ୟ ଗୋଟିଏ ଦିଗ-ବାଉଳା ବିଦ୍ରୋହ । ଆମର ଗୋଟାଏ ପ୍ରକାର ଅଭ୍ୟାସ ହୋଇ ଗଲାଣି ଆଲୁଅକୁ ଦେଖି ବିଭୋର ହୋଇଯିବା । ଉଷା

ସୁନ୍ଦର, ସୂର୍ଯ୍ୟ ସୁନ୍ଦର, ଉଦ୍ଭିଦ, ମଣିଷ, ଫୁଲ, ଜଡ଼ ଏବଂ ମଣିଷ ଛୁଆ ଏ ସବୁ ସୁନ୍ଦର । ଦିନବେଳେ ମମତାର ଫଳ କଆସ୍ମ ଯେତେ ବଢ଼ିଯାଏ, ବିସ୍ମୃତ ହୋଇଯାଏ, ଆମକୁ ଯେତେ ଦମ୍ଭ ଲାଗେ, ସେତେ ଖୁସି ଲାଗେ । ଆଲୋକ ପାଇଁ ଆମ ଭିତରେ ଅନେକ ଉତ୍କଣ୍ଠା ! ଏଣେ କିନ୍ତୁ ଅନ୍ଧାରର ଆକର୍ଷଣ ଅନିବାର୍ଯ୍ୟ । ଅନ୍ୟ ଜନ୍ତୁ ଅପେକ୍ଷା ଆମେ ବେଶୀ ଦେଖୁ, ବେଶୀ ବୁଝୁ । ଆମ ବୁଦ୍ଧିର ଫାଟକ ଅନେକ ପ୍ରଶସ୍ତ । ଏଣୁ ଆମ ଭିତରକୁ ଅନେକ ପରିମାଣରେ ଆଲୁଅର ଅନୁପ୍ରବେଶ ହୁଏ, ଉପନିବେଶ ସବୁ ପ୍ରତିଷ୍ଠିତ ହୁଏ । ଆମେ ଦୁଇଭାଗ ହୋଇଯାଉ । ଦୁଇଭାଗ ଛାଡ଼ ଶହେଭାଗ ହେଲେ ମଧ୍ୟ ଆପତ୍ତି ନ ଥିଲା । କିନ୍ତୁ ସେଇ ପରିମାଣରେ ଶଠତା ଆମ ଭିତରକୁ ପଶି ଆସେ । ପଶିଆସେ ଦ୍ୱନ୍ଦ୍ୱ ଏବଂ ସଂଶୟ । ଆମେ ପ୍ରକୃତରେ ଆଲୁଅର ନା ଅନ୍ଧାରର, ଏ ବିଷୟରେ ସନ୍ଦେହ ଆସିଯାଏ । କଥିତ ଅଛି ଯେ ଜଣେ ଦାର୍ଶନିକ ଏକଦା ସ୍ୱପ୍ନ ଦେଖିଲେ ସେ ଏକ ପ୍ରଜାପତି । ତା'ପରେ ତାଙ୍କର ସମସ୍ୟା ହେଲା ଜାଣିବାକୁ ଯେ ସେ ପ୍ରଜାପତି ହୋଇ ମଣିଷ ହେବାର ସ୍ୱପ୍ନ ଦେଖୁଛନ୍ତି ନା ମଣିଷ ହୋଇ ପ୍ରଜାପତି ହେବାର ସ୍ୱପ୍ନ ଦେଖୁଛନ୍ତି । ସମାଧାନର ପନ୍ଥା ଖୋଜି ଖୋଜି ସେ ହୁଏତ ଭୁଲିଯାଇଥିବେ । ଆମର ପ୍ରାୟ ସେଇ ସମସ୍ୟା । ଏ ଦୋଛକି ମୂଳକରେ ଆମେ କାହାର ? ଅନ୍ଧାରର ନା ଆଲୁଅର ? ପକ୍ଷେ ଆପୋଷବାଦୀ କହନ୍ତି ଆମେ ଉଭୟର । ଆଉ ପକ୍ଷେ ବିରକ୍ତ ହୋଇ କହନ୍ତି ଆମେ କାହାରି ନୋହୁଁ । ଏମିତି ଟଣାଓଟରା ଭିତରେ କିନ୍ତୁ ସ୍ୱୀକାର କରିବାକୁ ପଡ଼େ ଯେ ଆମେ ଆଲୁଅରେ ଯାହା ଅନ୍ଧାରରେ ତାହା ନୋହୁଁ ଏବଂ ଅନ୍ଧାରରେ ଯାହା ଆଲୁଅରେ ତାହା ନୋହୁଁ । ଆମେ ଗୋଟାକରେ ବଞ୍ଚୁ ଏବଂ ଅନ୍ୟଟିରେ ଅଭିନୟ କରୁ । କିନ୍ତୁ ଏତେ ତନ୍ମୟ ତଦ୍‌ଗତ ଭାବରେ ଅଭିନୟ କରୁ ଯେ ଏ ଅଭିନୟ ହିଁ ସତ୍ୟ ଏବଂ ବାସ୍ତବ ଏକ ଅଭିନୟ ବୋଲି ମନେ ହୁଏ ।

ଅନ୍ଧାର ସ୍ଥିର ସମୁଦ୍ର ପରି ଗୋଟାଏ ସ୍ଥିତି — ଅତଳନୀୟ, ନିସ୍ପନ୍ଦ, ପ୍ରାଚୀନ । ଆଲୁଅ ଏକ ବିସ୍ଫୋରଣ, ଦୁର୍ଦ୍ଦମନୀୟ, ଛନ୍ଦମୟ, ଗତିଶୀଳ ଏଣୁ ନୂତନ ଅବିଚଳିତ ଅନ୍ଧକାର ହିଁ ପ୍ରକୃତିରୂପା କାଳରାତ୍ରି । ତା'ର ନିସ୍ପନ୍ଦ ଜଠରରୁ ଗ୍ରହ, ଚନ୍ଦ୍ର, ତାରା ଜୀବକୋଷରୁ ଅଙ୍କୁର ପରି ଜନ୍ମ ହୁଅନ୍ତି, ଜନ୍ମ ହୁଅନ୍ତି ଏ ଉଦ୍ଭିଦ, ପଶୁ ପକ୍ଷୀ ଏବଂ ମଣିଷ । ସେ ଆଦ୍ୟ ଜନୟିତ୍ରୀ ଜଗଦ୍ଧାତ୍ରୀ । ତା'ର କୋଳରେ ସବିତା ସ୍ପନ୍ଦିତ ହୁଅନ୍ତି । ପ୍ରାଣ ସ୍ପନ୍ଦିତ ହୁଏ, ଜୀବନର ଅଭିବୃଦ୍ଧି ହୁଏ, ଜୀବ ବହୁଗୁଣିତ ହୁଏ । ସେ ଅଖିଳ ବ୍ରହ୍ମାଣ୍ଡର ଏକମାତ୍ର ଜାୟା ! ତାର ନିସ୍ପନ୍ଦ ଶୀତଳ ଜଠରରେ ସୂର୍ଯ୍ୟ ନିର୍ବାପିତ ହୁଏ, ସୃଷ୍ଟି ସମାହୃତ ହୁଏ, ଗତି ସ୍ତମ୍ଭିତ ହୁଏ; ବିଲୟ ହୁଏ ଚେତନାର ସ୍ଫୁରଣ ! ସେ କାଳରାତ୍ରି, ବିଶ୍ୱବ୍ରହ୍ମାଣ୍ଡର ଶୀତଳ, ସମାଧି-ଗର୍ଭ !

ଆଲୁଅ ଗୋଟିଏ ବିନ୍ଦୁ, ଗୋଟିଏ ରେଖା, ଗୋଟିଏ ପ୍ରବାହ । ସେ ଏକକୁ ବହୁଧା ବିଭକ୍ତ କରେ । ନିଜେ ଦିଶେ ନାହିଁ କିନ୍ତୁ ସମସ୍ତଙ୍କୁ ଦେଖାଏ । ଅନ୍ଧାର ଏକ ସ୍ଥିତି—ଏକ ସମାଧି । ତା' ଭିତରେ ସବୁ ପୁଣି ଏକୀଭୂତ ହୁଅନ୍ତି । ସେ ହିଁ ପ୍ରତ୍ୟକ୍ଷ ଆଣି ଦିଏ "ନେହ ନାନାସ୍ତି କିଞ୍ଚନ" ।—ସେ ସମସ୍ତଙ୍କୁ ଲୁଚେଇ ଦିଏ, ପ୍ରତ୍ୟେକକୁ ଏକାକୀ କରିଦିଏ । ବାହାରର ସମସ୍ତ ଗ୍ରହ, ଚନ୍ଦ୍ର, ତାରା ଓ ପୃଥିବୀ ମନରାଜ୍ୟ ଭିତରକୁ ଚାଲିଆସନ୍ତି । ଅନ୍ଧାରରେ ଆମେ ଜଗତକୁ ଧାରଣ କରୁ, ଏଣୁ ଆଲୁଅକୁ ମଧ୍ୟ ଧାରଣ କରୁ, କିନ୍ତୁ ଆମ ଭିତରେ ଗୋଟିଏ ଖୋଜ ଅଛି । ସେ ଆମକୁ ଏକାକୀ ରହିବାକୁ ଦିଏନାହିଁ । ଆମେ ଆଉ ଜଣକୁ ଖୋଜ ! ସମଗ୍ର ସତ୍ତା ଅନ୍ଧାରରେ ବୁଡ଼ିଯାଏ; ବୁଡ଼ିଯିବାକୁ ସୁଖ ପାଏ, କାରଣ ତା'ର ଉପାଦନ ହିଁ ଅନ୍ଧାର । କିନ୍ତୁ ଏଇ ଗୋଟିଏ ମାତ୍ର ଚଞ୍ଚଳ ବିନ୍ଦୁ ଆମ ଭିତରେ ବିଦ୍ରୋହ କରେ, ଉଚ୍ଛ୍ୱାସର ରେଖ ତୋଳେ ଏବଂ ସେଇ ଚିହ୍ନଟି ହିଁ ବୋଧହୁଏ ଆଲୋକର କେନ୍ଦ୍ର ତାର ମୂଳ ଉପନିବେଶ ! ଅମେ ଆଲୋକିତ ହେଉ, ବହୁଧା ବିଭକ୍ତ, ସମ୍ପର୍କିତ ହେବାକୁ କାମନା କରୁ ଏବଂ ଆଲୁଅରେ ହିଁ ଏ ବିଭାଜନ ସମ୍ଭବ । ଏଣୁ ବହୁରୂପା ସମଷ୍ଟିକୁ ଭଲ ପାଇବାକୁ ଯାଇ ଆଲୁଅର ପୃଷ୍ଠଭୂମିଟାକୁ ଭଲ ପାଇଯାଉ ବ୍ୟକ୍ତିଟିକୁ ଭଲ ପାଇବାକୁ ଯାଇ ତା' ଘର ବାଡ଼ି, ଆମ୍ବଗଛ ଆଦିକୁ ଭଲ ପାଇଲା ପରି । ବୋଧହୁଏ ଏ ଭଲପାଇବା ହେତୁରୁ ହିଁ ବ୍ୟକ୍ତି ବିସ୍ତୃତ ହୋଇ ପ୍ରତିଫଳିତ ହୁଏ । ପାଖ ଆଖ ବସ୍ତୁ ମଧ୍ୟ ତା'ର ଚୁମ୍ବକର ଟାଣ ପାଇଁ ନିଜେ ଟାଣନ୍ତି । ସେଇଭଳି ଆଲୁଅ । ସେଥିରେ ଆମେ ସଂସାରକୁ ଦେଖି ସଂସାରକୁ ଭଲ ପାଉ ଏବଂ ସେଇ କ୍ରମରେ ଅଲୁଅକୁ ମଧ୍ୟ ଭଲ ପାଇଯାଉ ।

ଅମେ ସୂର୍ଯ୍ୟବଂଶୀ ନୋହୁ । ଅଲୁଅ ଅମର ମୌଳିକ ଉପାଦାନ ନୁହେଁ । ଆମେ ଶହେରେ ଅନେଶତ କେବଳ ଅନ୍ଧାର । ବାକି ଯେଉଁ 'ଏକ'ଟି ଆମେ ବୁଝି ପାରୁ ନାହୁଁ ତାକୁ ମଧ୍ୟ ଆଲୁଅ କହିବା ସହଜ ନୁହେଁ । ଜରାୟୁରୁ ଜରାୟୁକୁ ଆମର ଅନିବାର୍ଯ୍ୟ ଗତି ଏବଂ ପରିଶେଷରେ ଏକାକାର ଅଭିନ୍ନ ଅନ୍ଧାର ହିଁ ଏକମାତ୍ର ସତ୍ୟ ।



# ଲେଖକ ପରିଚିତି

## ଫକୀର ମୋହନ ସେନାପତି

ଓଡ଼ିଆ ସାହିତ୍ୟର ବ୍ୟାସକବି ଫକୀରମୋହନ ସେନାପତି ୧୮୪୩ ଖ୍ରୀଷ୍ଟାବ୍ଦରେ ବାଲେଶ୍ୱରରେ ଜନ୍ମଗ୍ରହଣ କରିଥିଲେ । ଅନୁକୂଳ ପରିବେଶ ନ ଥିବାରୁ ସେ ସେକାଳର ଉଚ୍ଚଶିକ୍ଷା ଲାଭ କରିବାର ଗୌରବରୁ ବଞ୍ଚିତ ହୋଇଥିଲେ । ବାଧ୍ୟହୋଇ ସ୍ୱଳ୍ପ ବେତନର ନିମକ୍‌ମହାଲରେ ଚାକିରି ଜୀବନ ଆରମ୍ଭ କରିଥିଲେ । କିଛୁକାଳ ଶିକ୍ଷକତା ମଧ୍ୟ କରିଥିଲେ । କିନ୍ତୁ ଓଡ଼ିଆ ସାହିତ୍ୟର ଏହି ମହାନ ତପସ୍ୱୀଙ୍କୁ ଲୁଚାଇ ରଖିବ କିଏ ? ସେ ନିଜ ପ୍ରତିଭାର ପରିଚୟ ପ୍ରଦାନ କରି ତତ୍‌କାଳୀନ ବହୁ ଗଡ଼ଜାତରେ ବିଖ୍ୟାତ ଦେୱାନ ଏବଂ ମେନେଜର ରୂପରେ ନିଜର ଦକ୍ଷ ଶାସନ ପରିଚାଳନାର ପ୍ରରିଚୟ ପ୍ରଦାନ କରିଥିଲେ । ସେ ପ୍ରଥମ-କାଳରେ ପ୍ରାଚୀନ ପୁରାଣର ଅନୁବାଦ, କିଛି କବିତା ଓ କାବ୍ୟ ରଚନାରେ ଧ୍ୟାନ ଦେଇଥିଲେ ହେଁ ସେ ହେଲେ ଓଡ଼ିଆ ସାହିତ୍ୟର ପ୍ରମୁଖ କଥାକାର । ତାଙ୍କର ଗଳ୍ପ ଓ ଉପନ୍ୟାସ ସର୍ବଗୁଣମୟୀ ସୌନ୍ଦର୍ଯ୍ୟରେ ରସାଣିତ । ତାଙ୍କର ଉପନ୍ୟାସ-ଗୁଡ଼ିକ ହେଲା—ପ୍ରାୟଶ୍ଚିତ୍ତ, ମାମୁଁ, ଛମାଣ ଆଠଗୁଣ୍ଠ, ଲଛମା ଓ ଗଳ୍ପ ସଂକଳନ ହେଲା ଗଳ୍ପସଳ୍ପ ।

## ଗୋଦାବରୀଶ ମହାପାତ୍ର

ଏହି ଶକ୍ତିଶାଳୀ କଥାଶିଳ୍ପୀ ୧୮୯୮ ଖ୍ରୀଷ୍ଟାବ୍ଦରେ ବାଣପୁରରେ ଏକ ନିମ୍ନ ମଧ୍ୟବିତ୍ତ ପରିବାରରେ ଜନ୍ମଗ୍ରହଣ କରିଥିଲେ । ନିର୍ଆଖୁଣ୍ଡାର ସମ୍ପାଦକ ହିସାବରେ ସେ ଦୀର୍ଘକାଳ ଯାବତ ଓଡ଼ିଶାର ସାମାଜିକ କ୍ଷେତ୍ରରେ ଏକ ଶକ୍ତିଶାଳୀ ଅନୁଷ୍ଠାନ ଥିଲେ । ସେ ଥିଲେ ଏକ ଧାରରେ ଜଣେ କଥାକାର, ଔପନ୍ୟାସିକ, କବି ଏବଂ ବିଶିଷ୍ଟ ଅନୁବାଦକ । ଟଲଷ୍ଟୟଙ୍କର ଗଳ୍ପମାଳା ଓଡ଼ିଆରେ ଅନୁବାଦ କରି ସେ ଯଶସ୍ୱୀ ହୋଇଛନ୍ତି । ମୋର କଲ୍ଲଙ୍କର ଭେଣ୍ଡେଟ୍ଟାର ଅନୁବାଦ କରିଛନ୍ତି 'ରକ୍ତପାତ' ନାମରେ । ତାଙ୍କର ଜ୍ୱାଳାମୟୀ ବାସ୍ତବତାଧର୍ମୀ କବିତା ଓଡ଼ିଆ ସମାଜରେ ଗଭୀର ପ୍ରେରଣା ସୃଷ୍ଟି କରିଥାଏ । 'ହଠ କଙ୍କାଳ' କବିତା ଏହାର ଉଦାହରଣ । 'କଣ୍ଟା ଓ ଫୁଲ' କବିତା ପୁସ୍ତକ ପାଇଁ ସେ କେନ୍ଦ୍ରୀୟ ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଥିଲେ । ଜଣେ ଶକ୍ତିଶାଳୀ ସମାଜଧର୍ମୀ ଲେଖକ ହିସାବରେ ସେ ସୁପରିଚିତ ।

## କାଳନ୍ଦି ଚରଣ ପାଣିଗ୍ରାହୀ

ସବୁଜ ଆନ୍ଦୋଳନର ଅନ୍ୟତମ ପ୍ରଭାବଶାଳୀ ସାରଥୀ ଶ୍ରୀ କାଳନ୍ଦୀଚରଣ ପାଣିଗ୍ରାହୀ ୧୯୦୧ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ । ସେ ରେଭେନ୍‌ସା

କଲେଜରେ ଅଧ୍ୟୟନ କାଳରେ ସବୁଜ ସାହିତ୍ୟ ସମିତି ଗଠନ କରି ନିଜର ସବୁଜ ବନ୍ଧୁମାନଙ୍କ ସହଯୋଗରେ ସାହିତ୍ୟରେ ଏକ ବୈପ୍ଳବିକ ପରିବର୍ତ୍ତନ ପାଇଁ ପରୀକ୍ଷା ଚଳାଇଥିଲେ । ତାଙ୍କ ରଚିତ "ମାଟିର ମଣିଷ" ଉପନ୍ୟାସ ଏକଦା ଓଡ଼ିଶାରେ ଚହଳ ସୃଷ୍ଟି କରିଥିଲା । 'ମାଟିର ମଣିଷ' ପରେ ସେ ଲେଖିଲେ 'ଲୁହାର ମଣିଷ' ଓ "ଅଙ୍ଗାର ମଣିଷ" । ତାଙ୍କର ଆଉ ଦୁଇଗୋଟି ଉଲ୍ଲେଖଯୋଗ୍ୟ ଉପନ୍ୟାସ ହେଉଛି 'ମୁକ୍ତାଗଡ଼ର କ୍ଷୁଧା ଓ ଅମରଚିତା' । ପ୍ରଥମ କାଳରେ ଗଳ୍ପ ସଙ୍କଳନ ହେଲା ଦ୍ୱାଦଶୀ' ଏହା ବ୍ୟତୀତ ତାଙ୍କର ଅନେକ ପ୍ରବନ୍ଧ ସଙ୍କଳନ ସମାଲୋଚନା, କବିତା ଓ ଗଳ୍ପ ସଙ୍କଳନ ଏବଂ ନାଟକ ମଧ୍ୟ ଅଛି । ସାହିତ୍ୟର ବିଭିନ୍ନ ବିଭାଗରେ ସେ ଲେଖନୀ ଚାଳନା କରି ଯଶସ୍ୱୀ ହୋଇଛନ୍ତି । ଯେଉଁ କେତେଜଣ ଓଡ଼ିଆ ସାହିତ୍ୟର ସାଧକ ସର୍ବଭାରତୀୟ ସ୍ତରରେ ପ୍ରତିଷ୍ଠିତ, ଶ୍ରୀଯୁକ୍ତ କାଳିନ୍ଦୀଚରଣ ପାଣିଗ୍ରାହୀ ସେମାନଙ୍କ ମଧ୍ୟରେ ଅନ୍ୟତମ ।

## ସଚ୍ଚିଦାନନ୍ଦ ରାଉତରାୟ

'ବାଜିରାଉତ'ର କବିଙ୍କୁ ଓଡ଼ିଶାରେ କିଏ ଅବା ନ ଜାଣେ । ସେ ଜଣେ ଶକ୍ତିଶାଳୀ କବି, ଗାଳ୍ପିକ ଓ ଔପନ୍ୟାସିକ ମଧ୍ୟ । ବର୍ତ୍ତମାନ ସାହିତ୍ୟ ସମାଲୋଚନାରେ ହାତ ଦେଇ କବି ଯଶସ୍ୱୀ ହୋଇଛନ୍ତି । ପ୍ରଥମ କାଳରେ ପଲ୍ଲିଶ୍ରୀ, ପୂର୍ଣ୍ଣିମା, 'ବାଜିରାଉତ'ରେ ଯେଉଁ କବି ପ୍ରତିଭାର ସ୍ଫୁରଣ ହୋଇଥିଲା, ପାଣ୍ଡୁଲିପି, କବିତା ୧୯୬୨ ଇତ୍ୟାଦି କାବ୍ୟଗ୍ରନ୍ଥଗୁଡ଼ିକରେ ସେହି କବି ପ୍ରତିଭାର ପୁଷ୍କଳ ପ୍ରମାଣ ସମ୍ଭବ ହୋଇଅଛି । କବିତା ୧୯୬୨ ପାଇଁ ସେ ଭାରତୀୟ ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଥିଲେ । ତାଙ୍କର ଅନେକ ଗୁଡ଼ିଏ ଗଳ୍ପ ସଙ୍କଳନ ଅଛି । ଆଧୁନିକ କବି ହିସାବରେ ସେ ଅତ୍ୟନ୍ତ ସୁନାମଧନ୍ୟ । କ୍ଷୁଦ୍ରଗଳ୍ପ ରଚନାରେ ତାଙ୍କର ମୌଳିକତ୍ୱ ଅନନ୍ୟସାଧାରଣ ।

## ସୁରେନ୍ଦ୍ର ମହାନ୍ତି

ସାହିତ୍ୟ ସ୍ରଷ୍ଟା ଓ ବିଶିଷ୍ଟ ବ୍ୟବସ୍ଥାପକ ଓଡ଼ିଆ ସାହିତ୍ୟରେ ଜଣେ ଅପ୍ରତିଦ୍ୱନ୍ଦୀ କଥାଶିଳ୍ପୀ । ସେ ଏକାଧାରରେ ଜଣେ ଗାଳ୍ପିକ; ଔପନ୍ୟାସିକ, ସମାଲୋଚକ, ଐତିହାସିକ ଏବଂ ସାମ୍ବାଦିକ । ଓଡ଼ିଆ ସାହିତ୍ୟର ଆଦିପର୍ବ ଓ ମଧ୍ୟପର୍ବରେ ତାଙ୍କର ସାହିତ୍ୟିକ ବିଶ୍ଳେଷଣ ପାଠକ ସମାଜର ଆଦରର ସାମଗ୍ରୀ । "ଜଗନ୍ମୋହନ ସାହିତ୍ୟ ସମୀକ୍ଷା" ପାଇଁ ଅଳ୍ପକାଳ ମଧ୍ୟରେ ସେ ସୁଧୀ ପାଠକ ସମାଜର ଦୃଷ୍ଟି ଆକର୍ଷଣ କରିପାରିଥିଲେ । "ନୀଳଶୈଳ" ଉପନ୍ୟାସ ରଚନା କରି ସେ ଭାରତୀୟ ସାହିତ୍ୟ ଏକାଡେମୀଦ୍ୱାରା ପୁରସ୍କୃତ ହୋଇଥିଲେ । ତାଙ୍କର ଗଳ୍ପଗୁଡ଼ିକ ଅତ୍ୟନ୍ତ ମନନଶୀଳ ଏବଂ ଆଧୁନିକତାର ସ୍ୱାଦରେ ପରିପୁଷ୍ଟ । ତାଙ୍କର

ଅନେକଗୁଡ଼ିଏ ଗଳ୍ପ ସଂକଳନ ପ୍ରକାଶିତ ହୋଇଅଛି । ତେବେ ଉପନ୍ୟାସ ଅପେକ୍ଷା କ୍ଷୁଦ୍ରଗଳ୍ପରେ ସୁରେନ୍ଦ୍ର ମହାନ୍ତିଙ୍କର ମୌଳିକ ପ୍ରତିଭାର ସ୍ୱାକ୍ଷର ଅଧିକ ଉପଲବ୍ଧ ହୋଇଥାଏ ।

## ଗୋପୀନାଥ ମହାନ୍ତି

ଜ୍ଞାନପୀଠ ପୁରସ୍କାର ଓ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ ଓଡ଼ିଶାର ସାମ୍ପ୍ରତିକ କାଳର ପ୍ରମୁଖ କଥାଶିଳ୍ପୀ ଶ୍ରୀ ଗୋପୀନାଥ ମହାନ୍ତି ସମସ୍ତଙ୍କ ନିକଟରେ ଅତ୍ୟନ୍ତ ସୁପରିଚିତ । ଜଣେ ଶକ୍ତିଶାଳୀ ଔପନ୍ୟାସିକ ହିସାବରେ ସେ ବନ୍ଦନୀୟ ହେଲେହେଁ ତାଙ୍କର କ୍ଷୁଦ୍ରଗଳ୍ପ ମଧ୍ୟ ଓଡ଼ିଆ ସାହିତ୍ୟରେ ନୂତନ ଅଧ୍ୟାୟ ସୃଷ୍ଟି କରିଅଛି । ତାଙ୍କର ପ୍ରତ୍ୟେକଟି ଗଳ୍ପ ଜୀବନଧର୍ମୀ ଏବଂ ଅଦ୍ଭୁତ ଭାବରେ ଶକ୍ତିଶାଳୀ । ତାଙ୍କପରି ନିଷ୍ଠାପର ଶିଳ୍ପୀ କ୍ୱଚିତ ଦେଖିବାକୁ ମିଳନ୍ତି । ଏହି ମହାନ ଶିଳ୍ପୀ ୧୯୧୪ ଖ୍ରୀଷ୍ଟାବ୍ଦରେ କଟକଜିଲ୍ଲାର ନାଗବାଲି ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ଆଜୀବନ ଉଚ୍ଚ ସରକାରୀ ଦାୟିତ୍ୱରେ ଥିଲେ ହେଁ ତାଙ୍କର ଆନ୍ତରିକ ସାହିତ୍ୟ ସାଧନା ଅଭିନନ୍ଦନୀୟ ।

## କିଶୋରୀଚରଣ ଦାସ

ଜଣେ ଉଚ୍ଚପଦସ୍ଥ ସରକାରୀ କର୍ମଚାରୀ । କର୍ତ୍ତବ୍ୟର ଅନୁରୋଧରେ ବିଭିନ୍ନ ଦେଶ ବିଦେଶରେ ଅବସ୍ଥାନ କରୁଥିଲେ ହେଁ ତାଙ୍କର ଓଡ଼ିଆ ସାହିତ୍ୟ ପ୍ରୀତି ନିରବଚ୍ଛିନ୍ନ ଭାବରେ ଅବ୍ୟାହତ ରହିଅଛି । ଜୀବନର ବହୁରଙ୍ଗୀ ଅନୁଭୂତି ଗଳ୍ପ ମାଧ୍ୟମରେ ରୂପାୟିତ କରିବାରେ ସେ ଜଣେ ସଫଳ କଳାକାର । ତାଙ୍କର ଏକାଧିକ ଗଳ୍ପ ସଂକଳନ ପ୍ରକାଶିତ ଏବଂ ପ୍ରଶଂସିତ । ସାମ୍ପ୍ରତିକ କାଳର ଓଡ଼ିଆ କ୍ଷୁଦ୍ରଗଳ୍ପ ସାହିତ୍ୟରେ ତାଙ୍କର ଏକ ସ୍ୱତନ୍ତ୍ର ସ୍ଥାନ ରହିଅଛି ।

## ଅଚ୍ୟୁତାନନ୍ଦ ପତି

ପ୍ରାୟ ତିନିଗୋଟି ଦଶକ ଧରି ନିରବଚ୍ଛିନ୍ନ ଭାବରେ ଓଡ଼ିଆ ସାହିତ୍ୟର ଏହି ନିରଳସ କର୍ମୀ କ୍ଷୁଦ୍ରଗଳ୍ପ ରଚନା କରି ଆସୁଛନ୍ତି । ଓଡ଼ିଶାର ଯେ କୌଣସି ଅଭିଜାତ୍ୟ ସମ୍ପନ୍ନ ସାହିତ୍ୟ ପତ୍ରିକାରେ ତାଙ୍କର ଗଳ୍ପ ପ୍ରକାଶିତ ହୋଇଥାଏ । ଏପରି ଜୀବନଧର୍ମୀ ବାସ୍ତବତାଧର୍ମୀ ସଫଳ ଗଳ୍ପରଚନା ଆମ୍ଭେମାନେ କଦାଚିତ ପାଠ କରିଥାଉ । ତାଙ୍କର ଗଳ୍ପଗୁଡ଼ିକରେ ପାଣ୍ଡିତ୍ୟର ଆଟୋପ ନାହିଁ, ବସ୍ତୁ ପାଠକାରେ ଅହଂକାର ନାହିଁ, କୃତ୍ରିମତାର ମାୟାଜାଲ ନାହିଁ । ସ୍ୱାଭାବିକ ଜୀବନର ସେ ଜଣେ ସାର୍ଥକ କଳାକାର । ତାଙ୍କର ଗଳ୍ପଗୁଡ଼ିକ ରସୋତ୍ତୀର୍ଣ୍ଣ ଓ ପ୍ରଭାବଶାଳୀ ।

**ଡକ୍ଟର୍ ବ୍ରହ୍ମୋତ୍କଳ ରଥ**

ଜଣେ ପ୍ରତିଭାଶାଳୀ ଓ ଲୋକପ୍ରିୟ ଅଧ୍ୟାପକ ଭାବରେ ଡକ୍ଟର ବ୍ରହ୍ମୋତ୍କଳ ରଥ ବୁଦ୍ଧିଜୀବୀ ମହଲରେ ଅତ୍ୟନ୍ତ ଜଣାଶୁଣା । ତାଙ୍କ ଲିଖିତ 'ପ୍ରଗତି' ପୁସ୍ତକ ପାଠକ ମନରେ ଗଭୀର ରେଖାପାତ କରିଥାଏ । ସେ ପ୍ରାବନ୍ଧିକ ଭାବରେ ସୁପରିଚିତ ହୋଇଲେହେଁ ସାମୟିକ ପତ୍ରପତ୍ରିକାରେ ବେଳେ ବେଳେ କ୍ଷୁଦ୍ରଗଳ୍ପ ମାଧ୍ୟମରେ ଲେଖକଙ୍କର ମାନବଧର୍ମୀ ସମ୍ବେଦନଶୀଳତା ଏବଂ ଜୀବନ୍ତବାଦୀ ଆତ୍ମମୁଖୀ ଅତ୍ୟନ୍ତ ଉପଭୋଗ୍ୟ ।

**ମନୋଜ ଦାସ**

'ମନୋଜ ଦାସଙ୍କ କଥା ଓ କାହାଣୀ' ପ୍ରକାଶିତ ହୋଇସାରିଛି । ଏତେ ଅଳ୍ପକାଳ ମଧ୍ୟରେ ସାହିତ୍ୟ କ୍ଷେତ୍ରରେ ଯଶଃ ଏବଂ ସ୍ୱୀକୃତି ଲାଭ କରିବା କେବଳ ତାଙ୍କର ଭାଗ୍ୟରେ ସମ୍ଭବ ହୋଇଅଛି । ସେ କେନ୍ଦ୍ର ସାହିତ୍ୟ ଏକାଡ଼େମୀଦ୍ୱାରା ସ୍ୱୀକୃତ ଏବଂ ସମ୍ମାନିତ । ତାଙ୍କର ଅନେକ ଗଳ୍ପ ଇଂରାଜୀ ଭାଷାରେ ଅନୂଦିତ ହୋଇ ଅନ୍ତର୍ଜାତିକ ପ୍ରଶଂସା ଲାଭ କରିଅଛି । ତାଙ୍କପରି ବହୁଳ ପ୍ରଚାରିତ ଲେଖକ ଓଡ଼ିଆ ସାହିତ୍ୟରେ ଖୁବ୍ ଅଳ୍ପ ଅଛନ୍ତି ବୋଲି ସ୍ୱୀକାର କରିବାକୁ ହେବ । ସେ ଜଣେ ଶକ୍ତିଶାଳୀ କ୍ଷୁଦ୍ରଗଳ୍ପ ଲେଖକ । ଏକଦା 'ଦିଗନ୍ତ' ସାହିତ୍ୟପ୍ରତିକା ସମ୍ପାଦନ କରି ସେ ଖୁବ୍ ଖ୍ୟାତି ଅର୍ଜ୍ଜନ କରିଥିଲେ ।

**ଦୁର୍ଗାମାଧବ ମିଶ୍ର**

ସ୍ୱାଧୀନତା ପରବର୍ତ୍ତୀ କାଳର ଅନ୍ୟତମ ଗଳ୍ପ ଲେଖକ ହିସାବରେ ଦୁର୍ଗାମାଧବ ମିଶ୍ର ଜଣେ କୃତୀ ଶିଳ୍ପୀ । ଉଚ୍ଚ ଦାୟିତ୍ୱ ସମ୍ପନ୍ନ ରାଜକର୍ମଚାରୀ ଭାବରେ କାର୍ଯ୍ୟରତ ଥିଲେ ହେଁ ସେ ଗଳ୍ପରଚନା କରି ଓଡ଼ିଆ ସାହିତ୍ୟର ସେବା କରି ଆସୁଛନ୍ତି । ସେ ମଧ୍ୟ ଜଣେ କବି । ତେବେ କବିତା ଅପେକ୍ଷା ଗଳ୍ପ ସୃଷ୍ଟିରେ ତାଙ୍କର ସ୍ୱୀକୃତି ଅଧିକ ବନ୍ଦନୀୟ ।

**ଚନ୍ଦ୍ରଶେଖର ରଥ**

ଯନ୍ତ୍ରାରୂଢ଼, ମନଅରଣ୍ୟ ପ୍ରଭୃତିର ଲେଖକ ଶ୍ରୀ ଚନ୍ଦ୍ରଶେଖର ରଥ ସମସ୍ତଙ୍କ ନିକଟରେ ସୁପରିଚିତ । ତାଙ୍କର ଗଦ୍ୟ ଶୈଳୀ ଅଭିନବ । ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଅନୁସରଣ କରି ବହୁକାଳ ପରେ ଏକ ନୂତନ ସ୍ୱାଦର ଗଦ୍ୟଲେଖା ପ୍ରଚଳନ କରାଇ ସୁଧୀପାଠକ ସମାଜର ଦୃଷ୍ଟି ଆକର୍ଷଣ କରିପାରି ଅଛନ୍ତି । ସେ ଜଣେ ବଶିଷ୍ଟ ପ୍ରାବନ୍ଧିକ ଓ ଗଳ୍ପ ଲେଖକ । ତାଙ୍କର ବଶେଷଣ ଧର୍ମୀ ଅନୁଚିନ୍ତା ଅତ୍ୟନ୍ତ ଅଭିନନ୍ଦନୀୟ ।

